# କାନାଡ଼ା ଡାଏରୀ

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର



ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

# କାନାଡ଼ା ଡାଏରୀ

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**

ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ନଭେମ୍ବର, ୧୯୭୦
ଦ୍ୱିତୀୟ ସଂସ୍କରଣ : ନଭେମ୍ବର, ୧୯୮୪
ତୃତୀୟ ସଂସ୍କରଣ : ଜୁଲଇ, ୧୯୮୯

ପ୍ରଚ୍ଛଦ :

**ଶ୍ରୀ ଅସିତ୍ ମୁଖାର୍ଜି**

ମୁଦ୍ରଣ :

**କଲ୍ୟାଣୀ ପ୍ରିଣ୍ଟର୍ସ**

ପିଠାପୁର, କଟକ

ମୂଲ୍ୟ :

**ବାରଟଙ୍କା**

# CANADA DIARY

**Dr. Krushna Prasad Mishra**

Published by :

**Smt. Annapurna Mishra**
Cuttack Students' Store
Balubazar, Cuttack-753002

First Edition : November, 1974
Second Edition : November, 1984
Third Edition : July 1989

Printed at :

**Kalyani Printers**
Pithapur, Cuttack

Rupees 12/- Only

# ଭୀମସେନ ମିଶ୍ର—ପୂଜାସ୍ପଦେଷୁ

ନନା,

ହୃଦ୍‌ରୋଗ ଯୋଗୁ ଆପଣଙ୍କୁ ତଳକୁ ଓହ୍ଲାଇବାକୁ ଯେବେ ମନା କରାଗଲା ସେହିଦିନ କାନାଡ଼ା ଡାଏରୀ ବହିଟି ଆପଣଙ୍କୁ ଉତ୍ସର୍ଗ କରିବାକୁ ମନସ୍ଥ କରିଥିଲି । ମୋ ସହିତ ଆପଣଙ୍କ ଜିଅ ଓ ନାତିର ଭ୍ରମଣ କାହାଣୀକୁ—ଆମମାନଙ୍କର ତିନି ବର୍ଷ ଆଠମାସର ବିଦେଶ ଅନୁଭୂତିକୁ ପଢ଼ି ଆପଣ ସୁଖୀ ହେବେ ବୋଲି ମୋର ବହୁତ ଆଶା ଥିଲା; କିନ୍ତୁ ବହିଟି ପ୍ରକାଶ ପାଇବା ପୂର୍ବରୁ ଆପଣ ଚାଲିଗଲେ ।

ପୁଣି କେବେ, କେଉଁଠି, କିପରି ଭାବରେ ଆପଣଙ୍କ ସଙ୍ଗେ ଦେଖା ହେବ, ସମ୍ପର୍କ ପ୍ରତିଷ୍ଠା ହେବ, ତାହାତ ଏବଠୁ କହିହେବନି; କିନ୍ତୁ ତଳେ ମାଟି ଓ ଉପରେ ତାରାମାନେ ଥିଲା ଯାକେ ଆମେମାନେ ତ ଆସୁଥିବା, ଯାଉଥିବା, କିଛି ଭାବରେ ସମ୍ବନ୍ଧ ଯୋଡ଼ୁଥିବା; କିନ୍ତୁ ଆପଣଙ୍କୁ ଶ୍ୱଶୁର କରି ପାଇବାର ଦୁର୍ଲ୍ଲଭ ଯୋଗ ଅନ୍ୟ ଜନ୍ମମାନଙ୍କରେ ପାଇବି କି ନାହିଁ କେଜାଣି । ଆପଣଙ୍କ ସ୍ମୃତିରେ କାନାଡ଼ା ଡାଏରୀକୁ ଉତ୍ସର୍ଗ କରିବାକୁ ଆପଣ ମୋତେ ଅନୁମତି ଦିଅନ୍ତୁ ।

ବିନମ୍ରାବନତ

**କୃଷ୍ଣ**

କାନାଡ଼ା ଡାଏରୀର ପ୍ରଚ୍ଛଦ ପଟରେ ଶିଳ୍ପୀ ଶ୍ରୀ ଅସିତ କୁମାର ମୁଖାର୍ଜି କାନାଡ଼ାର ଉତ୍ତର ପଶ୍ଚିମ ଅଞ୍ଚଳର ରେଡ୍ ଇଣ୍ଡିଆନମାନେ ମହତ୍ତ୍ୱପୂର୍ଣ୍ଣ ଜନ୍ମରେ, ବା ମୃତ୍ୟୁରେ ଅଥବା କୌଣସି ମହାନ୍ ବିଜୟ ପରେ ଯେଉଁ ନୃତ୍ୟ ଗଢ଼ି ସେମାନଙ୍କ ମନୋଭାବ ପ୍ରକାଶ କରନ୍ତି, ତାହାର ଚିତ୍ର ଅଙ୍କନ କରିଛନ୍ତି ।

They, too, aware of sun and air and water. Are fed by peaceful harvests, by war's long winter starv'd,
Their hands are ours, and in their lines we read A labur not different from our own

Remember, they have eyes like ours that wake Or sleep, and strength that can be won
By love. In every land is common life
That all can recognize and understand.

James Kirkup

# ଏଥିରେ ଅଛି





# ଯାତ୍ରା ଓ ଦର୍ଶନ

କାହିଁକି କେଜାଣି ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ଜଣେ ଅଧ୍ୟାପକ ହିସାବରେ ଯେତେ ଅଧିକ ଦିନ ଯାଉଥାଏ, ମୁଁ ସେତେ ଅଧିକ ବ୍ୟସ୍ତ ହେଉଥାଏ । ମୋତେ ଯେପରି ଜଣାଯାଉଥାଏ, ମୋର ପଢ଼ାପଢ଼ି ବନ୍ଦ ହୋଇ ଯାଉଛି, ରିସର୍ଚ୍ଚ କରିବାପାଇଁ ସ୍ପୃହା କମିଯାଉଛି, ପ୍ରି-ୟୁନିଭରସିଟି ପିଲାଙ୍କୁ ଓ ବି. ଏ., ପିଲାଙ୍କୁ ପଢ଼ାଇ ପଢ଼ାଇ ବୁଦ୍ଧି ବି କମି ଯାଉଛି । ଶରଡ଼ ଗୁଳାରେ ଗ୍ଳଲ ଗ୍ଳଲ, ପୁରା ପୁକୁମାରିଆ ହୋଇଯିବା ପୂର୍ବରୁ କିପରି ମୁଁ ବାହାରକୁ ଯାଇ ନୂଆ କ୍ନଲେଜ୍‌ର ସମ୍ମୁଖୀନ ହେବି, ପି. ଏଚ. ଡି. ଡିଗ୍ରୀ ପାଇବି—ଏହି କଥା ନେଇ ମୁଁ ବେଶି ବ୍ୟସ୍ତ ହୋଇ ପଡ଼ିଥିଲି । ବାହାରେ ପି ଏଚ. ଡି କରିବା କଷ୍ଟକର କଥା ବୋଲି ଜାଣିଥାଏ, ଶୁଣିଥାଏ, ତଥାପି ଭଉଣୀଟିଏ ବାହାରକୁ ଗଲା, ଜୋଇଁ ବଡ଼ ସ୍କଲର ରୂପେ ଆମେରିକା ଗଲେ, ମୁଁ ବାକି ରହିଯିବି, ଏହି ଚିନ୍ତା ମୋତେ ଅହର୍ନିଶି ଖାଇ ଯାଉଥାଏ । ପୁଣି ଭାବୁଥାଏ, ଆଧୁନିକ ଶତାବ୍ଦୀରେ ସଭ୍ୟତାର ତୁଙ୍ଗ ସ୍ତରକୁ ଚାଲି ଯାଇଥିବା ଆମେରିକା—ସେଠି କ'ଣ ହେଉଛି ଯାଇ ନ ଦେଖିଲେ, ମନ ଥୟ ହେବନାହିଁ । ଜୀବନରେ କିଛି କଲାପରି ଲାଗିବ ନାହିଁ । ସାହିତ୍ୟିକ ଆତ୍ମା ତ ମୋର ବେଶି ଅଥୟ ହେଉଥାଏ, ବାରମ୍ବାର ଘୋଷି ହେଉଥାଏ, କିଛି ଟେକ୍ ଅଫ୍ ଦରକାର, ଟେକ୍ ଅଫ୍! ସବୁ ଲେଖକ ଅନୁଭୂତିର ବ୍ୟାପକତା ପାଇଁ ବିଶ୍ୱ ବୁଲୁଛନ୍ତି । ମୁଁ ଲେଖକ ହେବି ଅଥଚ ଘରେ ବସିଥିବି ଜୀବନସାରା ! ଏହି ବ୍ୟସ୍ତତାରେ ମୁଁ ଫୁଲ୍ ବ୍ରାଇଟ୍ ସ୍କଲରସିପ୍ ପାଇଁ ଚେଷ୍ଟା କରୁଥାଏ, କମନ୍‌ୱେଲ୍‌ଥ୍ ସ୍କଲରସିପ୍ ପାଇଁ ବି ସବୁଆଡ଼େ ଦରଖାସ୍ତ ପକାଉଥାଏ । କମନ୍‌ୱେଲ୍‌ଥ୍ ସ୍କଲରସିପ୍‌ରେ ଇଂଲଣ୍ଡ କି କାନାଡ଼ା ଯିବାପାଇଁ ଇଚ୍ଛା ଥାଏ । ବେଶି ଇଚ୍ଛା ଥାଏ କାନାଡ଼ା ଯିବାକୁ, କାରଣ ମୋର ସାନ ସଢ଼ୁ, ପରିସଂଖ୍ୟାନଜ୍ଞ ଜିତେନ୍ଦ୍ରସ୍ୱ ଷଡ଼ଙ୍ଗୀ ଆଲବର୍ଟାକୁ ବର୍ଷେ ହେଲା ଚାଲିଯାଇଥାନ୍ତି ରିସର୍ଚ୍ଚ କରିବା ପାଇଁ । ଏହିପରି ସମୟରେ ମୁଁ ଇଣ୍ଟରଭ୍ୟୁ ପାଇଁ ଡାକରା ପାଇଲି ଦିଲ୍ଲୀ ଯିବାକୁ । ମୋ ପାଇଁ ଇଣ୍ଟରଭ୍ୟୁକୁ ଡାକରା ପାଇବାଇ ବଡ଼ କଥା—କାରଣ ଆଗରୁ ଡାକରା ବି ଆସୁ ନ ଥିଲା । ସେତେବେଳେ ମୁଁ ଭୁବନେଶ୍ୱର ବି. ଜେ. ବି. କଲେଜରୁ ସଦ୍ୟ ବଦଳି ହୋଇ ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧ୍ୟାପକ

ଥାଏ । ଶୀତ ଦିନ, ଦିଲ୍ଲୀ ଗଲି । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ କ୍ୱାର୍ଟରସ୍‌ରେ ଯାଇ ପହଞ୍ଚିଲି । ସେ ନଥାନ୍ତି, ସେତେବେଳେ କୌଣସି କାମରେ ସେ କଟକ ଆସିଥାଆନ୍ତି ବୋଧେ; କିନ୍ତୁ ଦେବେନ୍ଦ୍ର ବାବୁ ଥିଲେ, ତାଙ୍କର ଅତିଥି ହେଲି । ପହଞ୍ଚିବା ପରେ ତାଙ୍କ ଘରେ ଗପସପ ହେଉଥିବାବେଳେ କାନ୍ଥରେ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କ ଫଟୋ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି—ଅସମ୍ଭବ ସମ୍ଭବ ହୋଇଯିବା ପରି ମୋତେ ଜଣାଗଲା । ରେଭେନ୍‌ସା କଲେଜରେ ପଢ଼ିବା ବେଳୁଁ ନନ୍ଦିନୀ ନାନୀ ଓ ଦେବେନ୍ଦ୍ରବାବୁ ସାମ୍ୟବାଦୀ ଜୀବନ ଦର୍ଶନରେ ବିଶ୍ୱାସୀ ବୋଲି ମୁଁ ଜାଣିଥିଲି—ଯେଉଁ ଦର୍ଶନରେ ଜଡ଼ବାଦ, ନିରୀଶ୍ୱର ବାଦକୁ ଜୀବନ ଦର୍ଶନର ମୌଳିକ ଉପାଦାନ ରୂପେ ଗ୍ରହଣ କରାଯାଇଥାଏ । ଯାହାହେଉ, ସେମାନଙ୍କ ଘରେ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କ ଫଟୋ ଓ ପୂଜା ଦେଖି ମୁଁ ଖୁସି ହେଲି ଓ ସେମାନଙ୍କଠି କିଛି ବଡ଼ ଧରଣର ପରିବର୍ତ୍ତନ ଆସିଛି ବୋଲି ଅନୁମାନ କଲି । ସେଦିନ ଦେବେନ୍ଦ୍ର ବାବୁଙ୍କ ସହ ଶ୍ରୀ ଅରବିନ୍ଦଙ୍କ ଦର୍ଶନ ନେଇ ବହୁ ଆଲୋଚନା ହେଲା । ସେତେବେଳେ ଶ୍ରୀମାଙ୍କର କୌଣସି ଜୀବନୀକୁ ସେ ଅନୁବାଦ କରୁଥିଲେ । ସେଥିରୁ କିଛି ଅଂଶ ପଢ଼ି ସେ ମୋତେ ଶୁଣାଇଥିଲେ ମଧ୍ୟ ।

ସକାଳେ ଇଣ୍ଟରଭ୍ୟୁରେ ମୁଁ ଖୁବ୍ ବେଶୀ ଭଲ କରିପାରିଲି ନାହିଁ । ମନୋନୀତ ହେବି ବୋଲି ବିଶ୍ୱାସ ହେଉ ନ ଥାଏ; କିନ୍ତୁ ଦେବେନ୍ଦ୍ର ବାବୁ ସବୁ କଥା ଶ୍ରୀମାଙ୍କୁ ସମର୍ପଣ କରି ନିଶ୍ଚିନ୍ତ ହୋଇଯିବାକୁ ମୋତେ କହୁଥାଆନ୍ତି; ଆଉ କହୁଥାଆନ୍ତି, ମନରେ ଗୋଟିଏ ଲକ୍ଷ୍ୟ ରଖି ସମର୍ପିତ ଚିତ୍ତରେ କାମ କରିଯାଅ, ଲକ୍ଷ୍ୟ ନିଶ୍ଚୟ ପୂର୍ଣ୍ଣ ହେବ । ଗୁଡ଼ାଏ ଲକ୍ଷ୍ୟ ଏକକାଳରେ ମନରେ ରଖନାହିଁ । ଯାହାଙ୍କୁ ନିରୀଶ୍ୱରବାଦୀ ବୋଲି ମୁଁ ଭାବି ଆସୁଥିଲି, ତାଙ୍କଠୁ ମୁଁ ଯୋଗର ଏହି ସାଧାରଣ ସୂତ୍ର ସେଦିନ ଶିକ୍ଷା କଲି । ଦିଲ୍ଲୀରେ ସେ ବର୍ଷ ପ୍ରବଳ ଶୀତ । କମ୍ବଳ ଯାହା ନେଇଥାଏ, ତା' ଶୀତରୁ ରକ୍ଷା କରିବା ପାଇଁ ପର୍ଯ୍ୟାପ୍ତ ହେଉ ନ ଥାଏ । ଶୀତମାଡ଼, ତା' ସାଙ୍ଗକୁ ଇଣ୍ଟରଭ୍ୟୁରେ ଭଲ ନ କରିବାର ଦୁଃଖ—ଯାହାହେଉ ଶ୍ରୀମାଙ୍କ ଜୀବନୀରୁ କିଛି ଶୁଣିବା, ତାଙ୍କ ଉପରେ କିଛିଟା ବିଶ୍ୱାସ ଓ ଶୀତଯୋଗୁଁ ଗୋଟାଏ ଫୁଲା ନାଲି ଆଖି ନେଇ ମୁଁ ପୁଣି ଫେରି ଆସିଲି ।

ଦର୍ଶନ ପଢ଼ିବା ପାଇଁ କାନାଡ଼ା ଯିବାକୁ ମୁଁ କାହିଁକି ଇଚ୍ଛା କରୁଛି ବୋଲି ଇଣ୍ଟରଭ୍ୟୁରେ ପ୍ରଶ୍ନଟିଏ ମୋତେ ପଚରା ଯାଇଥିଲା । କାନାଡ଼ା ପହଞ୍ଚିବା ପରେ ସେଠାରେ ବହୁ ସାଧାରଣ ଭଦ୍ରଲୋକ ମଧ୍ୟ ମୋତେ ସେହି ପ୍ରଶ୍ନଟି ପଚାରିଛନ୍ତି । ଇଞ୍ଜିନିୟରିଂ ହେଲା, ଡାକ୍ତରୀ ହେଲା, କି ବିଜ୍ଞାନ ହେଲା, ଆମେରିକା କି କାନାଡ଼ା ଆସି ସେହି ପାଠ ପଢ଼ିବା କଥା କିଏ ବୁଝିପାରିବ—କିନ୍ତୁ ଦର୍ଶନ, କାନାଡ଼ାରେ ଦର୍ଶନ ? ଦର୍ଶନପାଇଁ ଭାରତଠୁଁ ଆଉ କେଉଁ ଦେଶରେ ବେଶି ଖ୍ୟାତ ଅଛି ?

ଟରଣ୍ଟୋରେ ଥିବାବେଳେ ପ୍ରସିଦ୍ଧ ମନ୍ତ୍ରୀ କଣେମ୍ ଚେଗଲ ଅଟଓ୍ୱାରୁ ଅରେ ବୁଲି ଆସିଥିଲେ । ତାଙ୍କ ବକ୍ତୃତାରେ ସେ ସେହି କଥା କହିଥିଲେ । କାନାଡ଼ା ଓ ଅନ୍ୟାନ୍ୟ କମନ୍‌ଓ୍ୱେଲଥ୍ ଦେଶର ଛାତ୍ରଛାତ୍ରୀମାନେ ଭାରତ ଯିବେ, ଭାରତର ଦର୍ଶନ, ସଙ୍ଗୀତ, ଭାସ୍କର୍ଯ୍ୟ, ଇତ୍ୟାଦି ଶିଖିବା ପାଇଁ; ଭାରତୀୟ ଯୁବକ କାନାଡ଼ା କି ଇଂଲଣ୍ଡ ଆସିବେ, ବିଜ୍ଞାନ ପଢ଼ିବାପାଇଁ । ଏପରି ଟ୍ରେଣ୍ଡର ସମ୍ମୁଖୀନ ହେଲେ, ମୁଁ ଦିଲ୍ଲୀରେ ସେଦିନ ଇଣ୍ଟରଭ୍ୟୁରେ ଯାହା କହିଥିଲି, ତାକୁଇ କହେ—ପରିସ୍ଥିତି ନେଇ ହାବିରକୁ ଟିକିଏ ବଢ଼ାଇ ଦିଏ କି କମାଇ ଦିଏ ଯାହା, ଭାରତୀୟ ଦର୍ଶନ ବିଶ୍ୱବିଶ୍ରୁତ, ଏଥିରେ ସନ୍ଦେହ କରିବାର କିଛି ନାହିଁ—ଯତ କଥା, କାନାଡ଼ାରେ ଦର୍ଶନର ସେପରି କିଛି ପରମ୍ପରା ନାହିଁ । ଆମେରିକାର ବି କିଛି ପରମ୍ପରା ନାହିଁ, ଯଦିଓ ଜନଡିଉଇ ଓ ଉଇଲିୟମ ଜେମସ୍‌ଙ୍କ ପ୍ରାଗ୍‌ମାଟିଜମ୍‌କୁ, ସେମାନେ ଦର୍ଶନକୁ ଲୋକେ ଆମେରିକାର ଦାନ ବୋଲି କହିଥା'ନ୍ତି । ତୁମେ ପ୍ରାଗ୍‌ମାଟିଜମ୍ କ'ଣ ଜାଣିଛ, ଜେମସ୍‌ଙ୍କ ଲେଖା ପଢ଼ିଛ ବୋଲି କହିଲେ ସେମାନେ ଭାରି ଖୁସି ହୁଅନ୍ତି; କିନ୍ତୁ କଥା ସେଠି ନାହିଁ । ଭାରତରେ ଦର୍ଶନର ଧାରା ଯେପରି ପ୍ରଚଳିତ ହୋଇଥିଲା, ସେହିପରି ଇଉରୋପରେ ଓ ଇଂଲଣ୍ଡରେ ମଧ୍ୟ ବିଭିନ୍ନ ଦାର୍ଶନିକ ଧାରା ପ୍ରଚଳିତ ହୋଇଥିଲା । ସେହି ସବୁ ଦାର୍ଶନିକ ଧାରାଗୁଡ଼ିକୁ ତତ୍ତ୍ୱ ମୀମାଂସାର ବିଭିନ୍ନ ଧାରା ବୋଲି କୁହାଯାଇ ପାରିବ । ଦାର୍ଶନିକମାନେ ଶୁଦ୍ଧ ଚିନ୍ତା ଦ୍ୱାରା ଏ ସଂସାରରେ ସ୍ୱରୂପ ନେଇ ତଥ୍ୟ ଦେଇପାରିବେ ବୋଲି ଏହି ପରମ୍ପରାର ବିଶ୍ୱାସ । ଶଙ୍କର, ରାମାନୁଜ, କାଣ୍ଟ୍, ହେଗେଲ, ଏପରିକି ଲକ, ବର୍କଲେ, ହ୍ୟୁମ୍ ମଧ୍ୟ ଏହି ଦାର୍ଶନିକ ପରମ୍ପରାର ଅନ୍ତର୍ଭୁକ୍ତ, କିନ୍ତୁ ବିଂଶ ଶତାବ୍ଦୀର ଆରମ୍ଭରେ ଏହି ଦର୍ଶନ ବିରୁଦ୍ଧରେ ଜି. ଇ. ମୁର୍ ବୋଲି ଇଂଲଣ୍ଡର ଜଣେ ଦାର୍ଶନିକ ଓ ତାଙ୍କ ପରେ ପରେ ବର୍ଟ୍ରାଣ୍ଡ ରସେଲ ଓ ଉଇଟ୍‌ଗେନ୍‌ଷ୍ଟାଇନ୍ ସେମାନଙ୍କର ପ୍ରତିବାଦର ସ୍ୱର ଉତ୍ତୋଳନ କଲେ । ଏମାନଙ୍କୁ ତର୍କପ୍ରଧାନ ବିଶ୍ଳେଷକ ଦାର୍ଶନିକ ବୋଲି କୁହାଯାଏ । ବିଶ୍ୱରେ ନାଆଁ ମାରିବା ପରି ଏହି ଦର୍ଶନ ଇଂଲଣ୍ଡରୁ ବାହାରିବା ପରେ କାନାଡ଼ା, ଆମେରିକା, ଅଷ୍ଟ୍ରେଲିଆ, ପ୍ରଭୃତି, ଦେଶମାନଙ୍କରେ ଖୁବ୍ ଶୀଘ୍ର ବ୍ୟାପି ଯାଇଥିଲା । ଡକ୍ଟର ଗଣେଶ୍ୱର ମିଶ୍ର, ଯାହାଙ୍କ ଅଧ୍ୟାପକ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ ହୋଇ ମୁଁ ରେଭେନ୍‌ସା କଲେଜରେ ଦର୍ଶନରେ ଅନର୍ସ ନେଇ ବି. ଏ. ପଢ଼ିଥିଲି, ଲଣ୍ଡନ ଯାଇ ବିଖ୍ୟାତ ବିଶ୍ଳେଷକ ଦାର୍ଶନିକ ଏ ଜେ. ଏୟାରଙ୍କ ତତ୍ତ୍ୱାବଧାନରେ ରିସର୍ଚ୍ଚ କରି ଫେରି ଆସିଥାଆନ୍ତି । ଇଂଲଣ୍ଡରୁ ଫେରିବା ପରେ କଟକରେ ଅନୁଷ୍ଠିତ ହୋଇଥିବା ଫିଲୋସଫି କଂଗ୍ରେସରେ ତାଙ୍କ ସହ ମୋର ଦେଖା ହୁଏ, ସେତେବେଳେ ମୁଁ ବି. ଜେ. ବି. କଲେଜରେ ଅଧ୍ୟାପକ । କଟକରେ ଅନୁଷ୍ଠିତ ହୋଇଥିବା ନିଖିଳ ଭାରତୀୟ ଦର୍ଶନ କଂଗ୍ରେସରେ ବିଶ୍ଳେଷକ ଦର୍ଶନ ନ ଜାଣିଥିବାରୁ ଗଣେଶ୍ୱର ମିଶ୍ରଙ୍କ ଆଲୋଚନା ମୁଁ ବୁଝିପାରିଲି ନାହିଁ । ତାଙ୍କ ସହ

ମତ ବିନିମୟ କରିବା ମଧ୍ୟ ଅସମ୍ଭବ ହୋଇ ପଡ଼ୁଥିଲା । ଯେତେବେଳେ ଏହି ତର୍କପ୍ରଧାନ ବିଶ୍ଳେଷଣିକ ଦର୍ଶନ ପ୍ରତି ହୃଦୟରେ ଯେତିକି ଆକର୍ଷଣ, ସେତିକି ଘୃଣା ଓ ବିଦ୍ୱେଷ ବି ମୋର ସୃଷ୍ଟି ହୋଇଯାଇଥାଏ । ଦାର୍ଶନିକ ଯେ କାହିଁକି ସଂସାରର ତତ୍ତ୍ୱ ବିଷୟରେ କିଛି କହିପାରିବ ନାହିଁ, ଆଉ ସେ ଅଧିକାର କେବଳ ବୈଜ୍ଞାନିକର ବା ସାଧାରଣ ଲୋକର ଅଛି, ଆଉ ଦାର୍ଶନିକ ଯାହା କହିବ, ତାହା ଭାଷା ବିଷୟକ ହିଁ ହେବ, ଏସବୁ କଥା ସେତେବେଳେ ମୋର ଆଦୌ ବୋଧଗମ୍ୟ ହେଉ ନ ଥାଏ । ଭାଷାବିଶ୍ଳେଷକ ଦର୍ଶନ ମୁଁ ନ ପଢ଼ିଲେ ମୋର ବନ୍ଧୁମାନଙ୍କ ପଛରେ ରହିଯିବି, ସେ ଭୟ ମୋର ସେହି କଂଗ୍ରେସରେ ହିଁ ହୋଇଥିଲା । ବନ୍ଧୁ ଅଧ୍ୟାପକ ବନବିହାରୀ ଚୌଧୁରୀ ଏହି ଦର୍ଶନରେ ଗବେଷଣା କରିବାକୁ ମୋତେ କିଛି ଉତ୍ସାହ ଦେଉଥାଆନ୍ତି । ମୁଁ ସେହି ଦର୍ଶନ ପଢ଼ିବାକୁ କାନାଡ଼ା ଆସିଛି ବୋଲି ଲୋକଙ୍କୁ କହୁଥାଏ; କିନ୍ତୁ ଭାଷାବିଶ୍ଳେଷଣିକ ଦର୍ଶନ କ'ଣ ତାହା କାନାଡ଼ାର ବହୁ ଶିକ୍ଷିତ ଲୋକେ ବି ଜାଣି ନ ଥା'ନ୍ତି । ତେଣୁ ମୋର ଏହି ଉତ୍ତର ପରେ ଆମ୍ଭମାନଙ୍କର କଥା ଆଉ ବେଶି ଦୂର ଆଗାଏ ନାହିଁ, ଅନ୍ୟ କଥା ପଡ଼େ ।

ଏହି ପ୍ରଶ୍ନ ଟରଣ୍ଟୋର ବିଶ୍ୱବିଦ୍ୟାଳୟର କୌଣସି ଦର୍ଶନ ଅଧ୍ୟାପକ କିନ୍ତୁ ମୋତେ ପଚାରି ନ ଥିଲେ । ମୁଁ ସେ କଥା ପହଞ୍ଚୁ ପହଞ୍ଚୁ ଲକ୍ଷ୍ୟ କଲି ଓ ଖୁସି ହୋଇଥିଲି । ସେମାନଙ୍କ କଥାରୁ ଯେପରି ଜଣାପଡ଼ିଲା, ଭାରତରୁ କାନଡ଼ାକୁ ଦର୍ଶନ ପଢ଼ିବାକୁ ଆସିବା ନିହାତି ସ୍ୱାଭାବିକ କଥା । ପ୍ରଫେସର୍ ଡେଭିଡ଼ ସାଭାନ ଖାଲି ଦୁଃଖ କରି ଯାହା କହିଲେ ଯେ, ସେ ଭାରତୀୟ ଦର୍ଶନ ସମ୍ବନ୍ଧରେ ବେଶି କିଛି ପଢ଼ାପଢ଼ି କରିବାକୁ ସମୟ ପାଇ ନାହାନ୍ତି । ମୋଟା ହୋଇ ଲୋକ, ମୋଠାରୁ ଟିକିଏ ବାଙ୍ଗରା —ଚନ୍ଦା ଗୋଲ ମୁଣ୍ଡ, ସେତେ ବେଶି ଆର୍ଯ୍ୟସୁଲଭ କେଶ୍ ନ ଥିବା ପ୍ରଫେସର୍ ସାଭାନଙ୍କଠାରୁ ସେହି ବାକ୍ୟଟି ଶୁଣି ମୋତେ ଖୁବ୍ ଖୁସି ଓ ସନ୍ତୋଷ ଲାଗିଲା । ସେହି ବୋଧେ ମୋତେ କହିଲେ, ପାଟନାରୁ ଆଉ ଜଣେ ଛାତ୍ର ଶ୍ରୀ କୃଷ୍ଣମୋହନ ଝା ପ୍ରଫେସର୍ ଗାଉଜଙ୍କ ତତ୍ତ୍ୱାବଧାନରେ ରିସର୍ଚ୍ଚ କରୁଥିବା କଥା । କୃଷ୍ଣମୋହନଙ୍କଠାରୁ ସବୁ ଦରକାରୀ କଥା ବୁଝାବୁଝି କରିବା ପାଇଁ ମଧ୍ୟ ସେ ମୋତେ କହିଥିଲେ; କିନ୍ତୁ ମୁଁ ବହୁତ ଦିନ ଯାଏ କୃଷ୍ଣମୋହନଙ୍କ ସହ ଦେଖା କରିପାରି ନ ଥିଲି—ଯାହା ବୁଝିଥିଲି, ତାହା ସବୁ ଇତିହାସ ଦର୍ଶନ କଥା ପ୍ରଫେସର୍ ଡ୍ରେଙ୍ଗଠାରୁ, ଯେ ରିସର୍ଚ୍ଚ କରିବା ପାଇଁ ଆସୁଥିବା ଛାତ୍ରଙ୍କୁ ବୁଝାଇବା ଦାୟିତ୍ୱରେ ଥାଆନ୍ତି । ସାଭାନ ଆମେରିକାର ହାର୍ଭାର୍ଡ ବିଶ୍ୱ-ବିଦ୍ୟାଳୟର ଛାତ୍ର, ଆମକୁ ପରେ ସେ ସିମ୍ବଲିକ୍ ଲଜିକ୍ ପଢ଼ାଇଥିଲେ । ହାର୍ଭାର୍ଡରେ ପ୍ରସିଦ୍ଧ ତାର୍କିକ କ୍ୱାଇନ୍ ତାଙ୍କର ଗୁରୁ ଥିଲେ । ଟରୋଣ୍ଟୋ ବିଶ୍ୱବିଦ୍ୟାଳୟର ଅଧିକାଂଶ ପ୍ରଫେସର୍ ଇଂଲଣ୍ଡର ଛାତ୍ର—କିଏ ଅକ୍ସଫୋର୍ଡର ତ କିଏ କେମ୍ବ୍ରିଜ, ଆଉ କିଏ

ଲଣ୍ଡନ ବିଶ୍ୱବିଦ୍ୟାଳୟର । ଅକ୍ସଫୋର୍ଡ଼ ଓ କେମ୍ବ୍ରିଜକୁ ହିଁ ଭାଷା ବିଶ୍ଳେଷଣକ ଦର୍ଶନର ଆଦିଭୂମି ବୋଲି କୁହାଯାଏ । ସେହି ସବୁ ବିଶ୍ୱବିଦ୍ୟାଳୟଗୁଡ଼ିକରୁ ଟରଣ୍ଟୋର ଅଧିକାଂଶ ପ୍ରଫେସର୍ ଶିକ୍ଷା ପାଇ ଆସିଛନ୍ତି ଜାଣି ମୁଁ ଖୁସି ହେଲି । ତହିଁକ ପିଲମାନଙ୍କ କଥାବାର୍ତ୍ତା ଯେ ଆମେରିକା ଓ କାନାଡ଼ାର ଦଶଟି ଶ୍ରେଷ୍ଠ ବିଶ୍ୱବିଦ୍ୟାଳୟ ମଧ୍ୟରେ ଟରଣ୍ଟୋର ସ୍ଥାନ ଅଛି । ମୋତେ ଖୁସି ଲଗେ, ମୁଁ ଉତ୍ସାହିତ ହୁଏ ।

ଟରଣ୍ଟୋରେ ପହଞ୍ଚିବାରେ ଦ୍ୱିତୀୟ ଦିନ ମୁଁ ଡ଼ିପାର୍ଟମେଣ୍ଟକୁ ଯାଇଥିଲି । ସେଦିନ ସେପ୍ଟେମ୍ବର ୬୭ ତାରିଖ । ସବୁ ନୂଆ ନୂଆ, ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ ଲାଗୁଥାଏ । ଶ୍ରୀମତୀ ହେରିକାଙ୍କ ମେଜର୍ ଷ୍ଟ୍ରିଟ୍‌ର ଭଡ଼ା ଘରେ ଗ୍ରୁଡ଼ ଇଉନିଭର୍ସିଟି ବିଲ୍ଡିଙ୍ଗ୍ସ ଆଡ଼କୁ ଚାଲିଲି । ଆଗରୁ ଗତ ବର୍ଷର ଗାଇଡ଼୍ ମିସ୍ ଜୋଏନ ଗାର୍ନର ମେଜର ଷ୍ଟ୍ରିଟ୍‌ର ସେହି ଭଡ଼ାଘରୁ ଇଉନିଭର୍ସିଟି ବିଲ୍ଡିଂସ୍ ଖୁବ୍ ପାଖ ବୋଲି କହି ଯାଇଥାନ୍ତି । ପଚାରି ପଚାରି ଫିଲୋସଫି ଡ଼ିପାର୍ଟମେଣ୍ଟରେ ପହଞ୍ଚିଗଲି । ସିଡ଼ନିସ୍ମିଥ୍ ବିଲ୍ଡିଂସ୍‌ରେ ସେତେବେଳେ ଫିଲୋସଫି ଡ଼ିପାର୍ଟମେଣ୍ଟ ଥାଏ । ମୁଁ ଯାଇ ପ୍ରଫେସର୍ ଡ୍ରେକ୍ଙ୍କ ସହି ତାଙ୍କ ରୁମ୍‌ରେ ଦେଖାକଲି । ଗୋରା ହୋଇ ଡେଙ୍ଗା, ଅତି ଭଦ୍ର ବ୍ୟବହାର, ଇଂଲଣ୍ଡର ଲୋକ । ରିସର୍ଚ୍ଚ ଆରମ୍ଭ କରିବା ପୂର୍ବରୁ କମ୍ପ୍ରିହେନ୍‌ସିଭ୍ ପରୀକ୍ଷାରେ ପାସ କରିବାକୁ ହୁଏ ବୋଲି ସେ ମୋତେ କହିଲେ । ସେଥିରେ ପାସ୍ କରି ଯୋଗ୍ୟ ବୋଲି ବିବେଚିତ ହେଲେ, ତା'ପରେ ଯାଇ ତୁମକୁ ରିସର୍ଚ୍ଚର ଛାତ୍ରରୂପେ ନିଆଯିବ । କମ୍ପ୍ରିହେନ୍‌ସିଭ ପରୀକ୍ଷାରେ ପାଶ୍ଚାତ୍ୟ ଦର୍ଶନ ନେଇ ତୁମକୁ ମୌଖିକ ପରୀକ୍ଷାରେ ଯେ କୌଣସି ପ୍ରଶ୍ନ ପଚରା ଯାଇପାରେ । ତେଣୁ ସେହି ପରୀକ୍ଷାପାଇଁ ପ୍ରସ୍ତୁତ ହେବାକୁ ହେଲେ କେତୋଟି ବିଷୟ ନେଇ ପୋଷ୍ଟଗ୍ରାଜୁଏଟ କୋର୍ସରେ ପଢ଼ିବାକୁ ହୁଏ । ସେ ସବୁ ବିଷୟରେ ଅଲଗା ପରୀକ୍ଷା ବି ହୁଏ ଓ ସେ ସବୁଥିରେ କୃତିତ୍ୱ ଅର୍ଜନ କଲେ ସାର୍ଟିଫିକେଟ ବି ମିଳେ; କିନ୍ତୁ ପରୀକ୍ଷାଗୁଡ଼ିକ କଷ୍ଟ; ବିଶେଷ ପରିଶ୍ରମ କରିବାକୁ ପଡ଼ିବ । ମୁଁ ପ୍ଲେଟୋ, ହ୍ୟୁମ ଓ ଆନାଲିଟିକ୍ ଫିଲୋସଫି ନେବା ପାଇଁ ଠିକ୍ କଲି । ତା' ଛଡ଼ା ଦର୍ଶନ ବାହାରେ କୌଣସି ଗୋଟିଏ ବିଷୟରେ କୋର୍ସ ନେଇ ମଧ୍ୟ ପଢ଼ିବାକୁ ହୁଏ । ମୁଁ ଏହି କୋର୍ସ ପାଇଁ ମଡ଼ର୍ଣ୍ଣ ପଲିଟିକାଲ ଥଟ୍ ନେଇଥିଲି । ଏସବୁ ଛଡ଼ା ମେଟାଏଥିକ୍ସ, ଲଜିକ ଓ ହେଗେଲ ଏହି ତିନୋଟି କୋର୍ସରେ ଯାଇ ମୁଁ କ୍ଲାସରେ ବସିଲି । ଏ ତିନୋଟିକୁ ଅଡ଼ିଟ୍ କୋର୍ସରୂପେ ମୁଁ ନେଇଥିଲି । ପ୍ରଥମ ସେମେଷ୍ଟରରେ ପ୍ଲେଟୋ, ହ୍ୟୁମ ଓ ଆନାଲିଟିକ୍ ଫିଲୋସଫି ଓ ଜର୍ମାନ ଏବଂ ଫ୍ରେଞ୍ଚ ଭାଷା ଦୁଇଟି ପଢ଼ିଲି । ଗ୍ରୀଷ୍ମ ଛୁଟିରେ ହେଉଥିବା ସେମେଷ୍ଟରରେ ମଡ଼ର୍ଣ୍ଣ ପଲିଟିକାଲ୍ ଥଟ୍ ଓ ଦ୍ୱିତୀୟ ସେମେଷ୍ଟରରେ ଏଥିକ୍ସ, ହେଗେଲ ଓ ଲଜିକ୍ ପଢ଼ିଲି । ଦୁଇଟି ଜିନିଷ ଏହି ଶିକ୍ଷା ପ୍ରଥାରେ ମୋତେ ଭଲ ଲାଗିଥିଲା । ଇଂରାଜୀ ଭାଷା ଛଡ଼ା ଦୁଇଟି ଇଉରୋପୀୟାନ

ଭାଷା ଉପରେ ସେମାନଙ୍କର ଜୋର ଓ ଦର୍ଶନ ବାହାରେ ଆଉ କୌଣସି ବିଷୟରେ ଗୋଟିଏ କୋର୍ସ ନେଇ ପାରଦର୍ଶିତା ଲାଭ କରିବାର ନିୟମ । ଭାରତରେ ନିଜ ମାତୃଭାଷା ଓ ଇଂରାଜୀକୁ ଛାଡ଼ିଦେଲେ, ଅନ୍ୟାନ୍ୟ ଭାଷା ଶିଖିବା ପାଇଁ ଲୋକଙ୍କ କୁଣ୍ଠା କଥା ସମସ୍ତେ ଜାଣନ୍ତି । ବାଧ୍ୟବାଧକତାରେ ପଡ଼ି ଲୋକେ ଯାହା ଇଂରାଜୀ ଶିଖିଥା'ନ୍ତି । ତାକୁ ବି ଉଠାଇ ଦେବାକୁ ହିନ୍ଦିବାଲାଙ୍କ ଜିଦ୍; କିନ୍ତୁ ଆଧୁନିକ ଜଗତରେ ଜଣେ ଶିକ୍ଷିତ ଲୋକ ଯେ ତିନୋଟି ଚାରୋଟି ଭାଷାରେ ଦକ୍ଷତା ହାସଲ କରିବା ଉଚିତ, ସେ କଥା ଭାରତୀୟ ଲୋକେ ଏବେ ବି ଅନୁଭବ କରି ନାହାନ୍ତି । କେତେଜଣ ବଙ୍ଗାଳୀ ଓଡ଼ିଆ ଶିଖୁଛନ୍ତି ବା କେତେଜଣ ହିନ୍ଦୀଭାଷୀ ଓଡ଼ିଆ ଶିଖିବାକୁ ଆଗ୍ରହୀ ? କେତେଜଣ ଓଡ଼ିଆ ମରାଠୀ ଶିଖୁଛନ୍ତି, ସେମାନଙ୍କର କାବ୍ୟ, ଗଳ୍ପ, ଉପନ୍ୟାସ ପଢ଼ିବା ପାଇଁ ? ଭାରତର ୟୁନିଭରସିଟିଗୁଡ଼ିକରେ ଭାଷା ଶିଖିବା ଉପରେ ସୁଯୋଗ, ସୁବିଧା ଓ ଜୋର ଦିଆଯିବା ଉଚିତ ।

ନିଜର ଯାହା ବିଷୟ ତା ବାହାରେ ଅନ୍ୟ ଏକ ବିଷୟରେ ଗୋଟିଏ କୋର୍ସ ନେଇ ପାରଦର୍ଶିତା ଲାଭ କରିବା ନିୟମର ଉପଯୋଗିତା ମଧ୍ୟ ଅଛି । ପି. ଏଚ. ଡି. ଛାତ୍ର ନିଜ ନିର୍ଦ୍ଦିଷ୍ଟ ବିଷୟରେ ବିଶେଷ ଜ୍ଞାନ ଅର୍ଜନ କରିବା ପୂର୍ବରୁ ଅନ୍ୟ ବିଷୟରେ ମଧ୍ୟ କିଛି ଜ୍ଞାନ ଆହରଣ କରିବା ଉଚିତ । ଏପରି କରିବାଦ୍ୱାରା ମତିବାଦର ସଙ୍କୀର୍ଣ୍ଣତା ଚାଲି ଯାଇଥାଏ । ଜ୍ଞାନର ବ୍ୟାପକତା ହୃଦୟରେ ଭାବର ବିଶାଳତା ଆଣିଥାଏ । ବିଷୟଗୁଡ଼ିକ ମଧ୍ୟରେ ପାରସ୍ପରିକ ସଦ୍‌ଭାବ ଏହି ନିୟମ ଯୋଗୁଁ ବଢ଼ିଥାଏ । ମୁଁ ଆନାଲିଟିକ୍ ଫିଲୋସଫି କୋର୍ସରେ ବହୁତ ବିଚକ୍ଷଣ ଗଣିତ ଛାତ୍ରଙ୍କୁ ଦେଖିବାକୁ ପାଇଥିଲି, ଯେଉଁମାନେ ଆନାଲିଟିକ୍ ଫିଲୋସଫିକୁ ଗଣିତ ବାହାର ବିଷୟରୂପେ ନେଇ କ୍ଲାସରେ ମୋ ସହ ବସୁଥିଲେ । ଏହି ନିୟମ ଯୋଗୁଁ ମୁଁ ମଡର୍ଣ୍ଣ ପଲିଟିକାଲ୍ ଥଟ୍ କୋର୍ସରେ ଯାଇ ରାଜନୀତି ବିଜ୍ଞାନର ଛାତ୍ରମାନଙ୍କ ସହ ବସୁଥିଲି ।

ପ୍ରଫେସର୍ ଡ୍ରେ ମୋ ସହିତ ଏମିତି କଥାବାର୍ତ୍ତା ହୋଇସାରି ମୁଁ କ'ଣ କ'ଣ ବିଷୟରେ ରୁଚି ରଖୁଛି ଜାଣିବା ପରେ ମୋତେ ପ୍ଲେଟୋ କୋର୍ସର ଅଧ୍ୟାପକ ଡେଭିଡ଼ ଗ୍ୟାଲୋପଙ୍କ ପାଖକୁ ନେଇଗଲେ । ଛଅ ଫୁଟରୁ ବେଶି ଉଚ୍ଚା ହେବେ, ଡେଜିସ୍ମାନ୍ ଦିଶୁଥିବା ଡେଭିଡ଼ ଗ୍ୟାଲପ । ଦ୍ୱିତୀୟ ମହାଯୁଦ୍ଧରେ ଯୁଦ୍ଧ କରିଥିଲେ, ଯୁଦ୍ଧ ପରେ ନୂଆ ଜୀବନ ଖୋଜି ଇଂଲଣ୍ଡରୁ କାନାଡ଼ା ଚାଲି ଆସିଛନ୍ତି । ମୋତେ ବସିବାକୁ କହି ପ୍ଲେଟୋ କୋର୍ସ ନେଉଛି ଜାଣି ଖୁସି ହୋଇ, ପ୍ଲେଟୋଙ୍କର କେଉଁ ଡାଏଲଗ୍ ମୋତେ ବେଶି ଭଲ ଲାଗେ ବୋଲି ପଚାରିଲେ । ମୁଁ "ରିପବ୍ଲିକ"ର ନାମ ନେଲି । ରିପବ୍ଲିକକୁ ଛାଡ଼ିଦେଲେ "କ୍ରିଟୋ", "ଫିଡ୍ରୋ" ହୋଇ ଆଉ ଦୁଇ ତିନୋଟି ଡାଏଲଗ ମଧ୍ୟ ମୁଁ ପଢ଼ିଥାଏ । ରିପବ୍ଲିକର କେଉଁ ଅଂଶ ମୋତେ

ବେଶି ଭଲ ଲାଗେ ବୋଲି ତାଙ୍କର ପ୍ରଶ୍ନ ହେଲା, ତାପରେ । ମୁଁ ଦ୍ୱିତୀୟ ଦିନର ପ୍ରଥମ ଦେଖାରେ ହିଁ ଏ ପ୍ରକାର ପ୍ରଶ୍ନର ସମ୍ମୁଖୀନ ହେବ ବୋଲି ଭାବି ନଥିଲି । ଯାହାକିନ୍ତୁ କ୍ଳାନ୍ତି ଆହୁରି ଯାଇ ନଥାଏ । ତଥାପି "ରିପବ୍ଲିକ"ରେ ଲିଖିତ ସେହି ଗୁମ୍ଫା କଥା କହିଲି, ଯେଉଁଥିରେ ବନ୍ଦୀଗଣ କାନ୍ଥକୁ ଚାହିଁ ବସିଥାଆନ୍ତି, ଗୁମ୍ଫା ଦ୍ୱାରବାଟେ ଆସୁଥିବା ଆଲୋକରେ ଚଳପ୍ରଚଳ ହେଉଥିବା ଲୋକଙ୍କର ଛାଇ କାନ୍ଥରେ ପଡ଼ୁଥାଏ ଓ ଛାଇଗୁଡ଼ିକୁ ସେହି ବନ୍ଦୀମାନେ ସତ୍ୟ ବୋଲି ଗ୍ରହଣ କରି ନେଉଥାଆନ୍ତି, କିନ୍ତୁ ଥରେ ଗୁମ୍ଫା ବାହାରକୁ ଆସିଲେ ସେମାନଙ୍କର ଧାରଣା ପରିବର୍ତ୍ତିତ ହୁଅନ୍ତା, ଇତ୍ୟାଦି । ସେହି କଥା ଶୁଣି ଗ୍ୟାଲପ ମୋତେ ସେଥିର ଅଂଶର ଦାର୍ଶନିକ ମହତ୍ତ୍ୱ କଥା ପଚାରିଲେ, ଯାହାର ଚଳ୍ପଚଳ ଉତ୍ତର ମୁଁ ଦେଲି । ସତ୍ୟ ଜାଣିବା ପୂର୍ବରୁ ମଣିଷ ଅସତ୍ୟକୁ ସତ୍ୟ ବୋଲି ମନେ କରିଥାଏ । ଇନ୍ଦ୍ରିୟ ଉପଲବ୍ଧ ଏହି ସମସ୍ତ ସଂସାର ଗୁମ୍ଫା ପ୍ରାଚୀରରେ ପଡ଼ୁଥିବା ସେହି ଛାୟା—ଗୁମ୍ଫା ବାହାରକୁ ଆସିପାରିଲେ ଆମେ ଦେଖିପାରିବା ଫର୍ମଗୁଡ଼ିକୁ—ନିତ୍ୟ ଅପରିଣାମୀ ବିଜ୍ଞାନଗୁଡ଼ିକୁ, ଯାହାର ପ୍ରତିବିମ୍ବ ହେଉଛି ଏହି ଇନ୍ଦ୍ରିୟ ଜଗତ । ଗ୍ୟାଲପଙ୍କୁ ମୋର ଏହି ଚଳ୍ପଚଳ ରହସ୍ୟାଚ୍ଛନ୍ନ ବ୍ୟାଖ୍ୟାନ ଭଲ ଲାଗିଲା ନାହିଁ । କିଛି ସମୟ କଥାବାର୍ତ୍ତା ପରେ ମୁଁ ତାଙ୍କ ରୁମ୍‌ରୁ ଚାଲି ଆସିଲି । ନିଜ ଉପରେ ରାଗ ଲାଗୁଥାଏ, କାହିଁକି ପ୍ଲେଟୋଙ୍କୁ ଆଗରୁ ଭଲ କରି ପଢ଼ିଲିନି ବୋଲି; କିନ୍ତୁ ଖାଲି ପ୍ଲେଟୋ ନୁହେଁ, କ୍ରମଶଃ ମୋତେ ଲାଗିଲା, ମୁଁ କୌଣସି ବିଷୟକୁ ଭଲ କରି ପଢ଼ି ନଥିବା ପରି । ମୋଟ ଉପରେ ଭାରତରେ ମୋର ସମସ୍ତ ଛାତ୍ରଜୀବନ ବ୍ୟର୍ଥ ହୋଇ ଯାଇଥିବା ପରି ମୋତେ ଲାଗିଲା । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଫାଷ୍ଟ କ୍ଳାସ୍ ଫାଷ୍ଟ କଥା ମନେ ପକାଇ ହସ ବି ଲାଗୁଥାଏ, କାନ୍ଦ ବି । କେବଳ ମୁଁ ନୁହେଁ, ଅନ୍ୟାନ୍ୟ ଭାରତୀୟ ଛାତ୍ରମାନଙ୍କର ମୋରି ପରି ଦଶା । ଦୁଇ ଜଣ ଭାରତୀୟ ଛାତ୍ର ସେଠି ଏକାଠି ହେଲେ, ପରସ୍ପରର ଗଳାକୁ ଧରି କାନ୍ଦୁଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହିପରି ମୋର ଦୁଃଖରେ ଥରେ ପଢ଼ ଗଣିତ ଛାତ୍ର ଅନ୍ତର୍ଯାଣ ଦାଶ, ଗଣିତଜ୍ଞ ଡକ୍ଟର ରମାକାନ୍ତ ମହାନ୍ତିଙ୍କ ପାଖକୁ ଚିଠିଟିଏ ଲେଖିଥିଲେ । କାହିଁକି ଭାରତରେ କୌଣସି ସବୁ ଅତ୍ୟାଧୁନିକ ଧରଣର କରାଯାଉ ନାହିଁ, ଯାହା ଫଳରେ ଭାରତୀୟ ଛାତ୍ରମାନେ ବାହାରକୁ ଆସି ହନ୍ତସନ୍ତ ହେଉଛନ୍ତି, ସେହି ଚିଠିର ବିଷୟବସ୍ତୁ ଥିଲା । ଏହି ଚିଠି କଥା ବହୁତ ପରେ ମୁଁ ଜାଣିଲି, ଯେତେବେଳେ ଅନ୍ତର୍ଯାଣ ଦାଶ ଆମେରିକାରୁ କାନାଡ଼ା ଆସିଲେ ରିସର୍ଚ୍ଚ କରିବାପାଇଁ । ଡକ୍ଟର ରମାନାଥ ମହାନ୍ତିଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭକ୍ତି ଅସୀମ; କିନ୍ତୁ ବ୍ୟସ୍ତ ହୋଇପଡ଼ି ସେ ସେହିପରି ଚିଠିଟିଏ ଲେଖି-ଦେଇଥିଲେ । ବିଜ୍ଞାନର କେତୋଟି ବିଭାଗକୁ ଛାଡ଼ିଦେଲେ ପ୍ରାୟ ପ୍ରତ୍ୟେକ ବିଷୟରେ ସେହି କଥା—ଏଠି ପଢ଼ିଥିବା, ସେଠି ପଢ଼ା ହେଉଥିବା ପାଠରେ ବିରାଟ ବ୍ୟବଧାନ ।

ପ୍ରତ୍ୟେକ ବିଷୟରେ ନୂଆ ନୂଆ ଚିନ୍ତାଧାରା ପ୍ରତିଦିନ ସେହି ଦେଶରେ ବଢ଼ିଚାଲିଛି । ଭାରତରେ କିନ୍ତୁ ସେହି ନୂଆ ନୂଆ କଥାକୁ ଜାଣିବାକୁ ଆଗ୍ରହ ନାହିଁ, ଯେଉଁ କେତେଜଣଙ୍କର ଆଗ୍ରହ ଅଛି ସେମାନଙ୍କପାଇଁ ନୂଆ କଥାଗୁଡ଼ିକୁ ପଢ଼ିବାର ସୁବିଧା ନାହିଁ—ନିଜେ ସେହି ଚିନ୍ତା କରି ଜ୍ଞାନର ଦିଗ୍‌ବଳୟକୁ ପ୍ରସାରିତ କରିବା ତ ଦୂରର କଥା, ଯାହାଫଳରେ ଆମେରିକା କି କାନାଡ଼ାକୁ ଭାରତରୁ ପଢ଼ିବାକୁ ଆସିଥିବା ଛାତ୍ରମାନଙ୍କୁ ବହୁତ ଅସୁବିଧା ଭୋଗ କରିବାକୁ ପଡ଼େ । ବନାରସରେ ମୁଁ ଏମ୍. ଏ. ପଢ଼ିଲାବେଳେ ପାଶ୍ଚାତ୍ୟ ଦର୍ଶନ କୋର୍ସରେ ଆମେ ବ୍ରାଡ଼ଲେଙ୍କ ଯାଏ ହିଁ ଯାଇଥିଲୁ । ସେତେବେଳେ ୧୯୫୪ । ବ୍ରାଡ଼େଲଙ୍କ ଦାର୍ଶନିକ ପ୍ରଭାବ ୧୯୨୦ରୁ ଇଂଲଣ୍ଡରୁ ପ୍ରାୟ ଲୋପ ପାଇ ସାରିଲାଣି । ଏ. ଜେ. ଏୟାରଙ୍କ ଗୋଟିଏ ବହି "ଲାଙ୍ଗ୍‌ୱେଜ୍, ଟ୍ରୁଥ୍ ଏଣ୍ଡ ଲଜିକ" ଆମକୁ ପଢ଼ା ଯାଉଥାଏ; କିନ୍ତୁ ବନାରସର ବେଦାନ୍ତୀ ଆବହାଓ୍ୱାରେ ଅଧ୍ୟାପକଙ୍କଠାରୁ ଆରମ୍ଭ କରି ଛାତ୍ରମାନେ ଏୟାର ସାହେବଙ୍କୁ ଓ ତାଙ୍କ ଦର୍ଶନକୁ ଥଟ୍ଟା କରିବା ଛଡ଼ା ଆଉ କିଛି ହେଉ ନଥିଲା । ଭାରତୀୟ ଲୋକଙ୍କର ଏକ ସାଧାରଣ ବିଶ୍ୱାସ ଯେ, ଭାରତର ମୁନି ଋଷିମାନେ ବହୁ ପ୍ରାଚୀନ କାଳରୁ ସମସ୍ତ ସତ୍ୟ ପାଇ ଯାଇଛନ୍ତି । ସେ ଦିଗରେ ଆଉ କିଛି ନୂଆ କେହି ପାଇ ପାରିବେ ନାହିଁ, ଦର୍ଶନରେ ନୂଆ କଥା କହୁଛି ବୋଲି କହିବା ହିଁ ଧୃଷ୍ଟତା । ସେଇଥିପାଇଁ ଶ୍ରୀ ଅରବିନ୍ଦଙ୍କ ଦର୍ଶନ ପ୍ରଥମେ ପ୍ରଥମେ ଭାରତୀୟ ବୁଦ୍ଧିଜୀବୀଙ୍କ ମହଲରେ ଘୋର ବିରୋଧର ସମ୍ମୁଖୀନ ହୋଇଥିଲା । ଏହିପରି ଏକ ସମୃଦ୍ଧିସମ୍ପନ୍ନ ଦେଶରୁ ମୁଁ କାନାଡ଼ା ଯାଇ ଯେ ପ୍ରଥମେ ପ୍ରଥମେ ଅସୁବିଧାରେ ପଡ଼ିଥିଲି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।



# ବିଜ୍ଞାନ—କେବଳ ବିଜ୍ଞାନ ?

ସ୍କଟିଶ୍ କଲେଜରେ ଥିବାବେଳେ ପଣ୍ଡିତ ଅଧ୍ୟାପକ ଶରତ କୁମାର ମହାନ୍ତିଙ୍କ "ବୈଜ୍ଞାନିକ ଚିନ୍ତାଧାରା" ବହିଟି ପଢ଼ି ମୁଁ ଖୁବ୍ ଖୁସୀ ହୋଇଥିଲି । ତା ପୂର୍ବରୁ ତ ବର୍ଟ୍ରାଣ୍ଡ୍ ରସେଲ୍ଙ୍କ "ସାଇଣ୍ଟିଫିକ୍ ଆଉଟ୍‌ଲୁକ୍" ବହିଟି ପଢ଼ିଥିଲି । ତାଙ୍କର ବହୁ ଲେଖାରେ ରସେଲ୍ ଏହି ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ଖୁବ୍ ଜୋର୍ ଦେଇଛନ୍ତି । ପାଶ୍ଚାତ୍ୟ ଦେଶ ଗୁଡ଼ିକର ସମୃଦ୍ଧି ମୂଳରେ ଏହି ଦୃଷ୍ଟିକୋଣ ହିଁ ନିହିତ ଅଛି ବୋଲି ତାଙ୍କର ମତ । ବିଭିନ୍ନ ଭାଷାରେ ଏହି ଦୃଷ୍ଟିକୋଣ ନେଇ ବହୁ ବହି ଓ ପ୍ରବନ୍ଧ ଲେଖା ହୋଇଛି । ଭାରତର ହଜାର ହଜାର ଲୋକ ସେହି ବହି ବା ସେହିପରି ବହି ଓ ଲେଖା ସେମାନଙ୍କ ନିଜ ନିଜ ଭାଷାରେ ପଢ଼ିଥିବେ; କିନ୍ତୁ ଆଶ୍ଚର୍ଯ୍ୟ କଥା, ସେହି ଦୃଷ୍ଟିକୋଣ—ବୈଜ୍ଞାନିକ ମନୋଭାବ—ଭାରତୀୟଙ୍କ ହୃଦୟରେ ସ୍ଥାନ ନେଇ ପାରିନି—ଭାରତୀୟଙ୍କ ହୃଦୟ ଓ ମନ ଯେପରି ଭିନ୍ନ ଉପାଦାନରେ ଗଢ଼ା—ଯାହା ସବୁ ଗ୍ରହଣ କରିବ, କେବଳ ବୈଜ୍ଞାନିକ ଦୃଷ୍ଟିକୋଣ ଛଡ଼ା ।

ଦିନକର କଥା ମୁଁ କହେ । ୧୯୬୩ ମସିହା ସେପ୍ଟେମ୍ବର ୨୫ ତାରିଖ । ମୁଁ କଲିକତାର ଦମ୍ ଦମ୍ ବିମାନଘାଟୀର ୱେଟିଂଲାଉଞ୍ଜରେ, ନନା, ବୋଉ, ସାନ ଭାଇ, ଶଳା, ଶାଳୀଙ୍କ ସହ କଥାବାର୍ତ୍ତା ହୋଇ ଠିଆ ହୋଇଥାଏ । ଦୀର୍ଘ ଦିନ ପାଇଁ ବିଦାୟ ନେଇ ଯାଉଥିବା ପୂର୍ବରୁ ଯେପରି କଥାବାର୍ତ୍ତା କରାଯାଏ ସେହିପରି କଥାବାର୍ତ୍ତା ଆମେମାନେ ହେଉଥିଲୁ । ପୂର୍ବ ଦିଗରେ ସୂର୍ଯ୍ୟ ଉଦୟ ହୋଇ ସାରିଥା'ନ୍ତି । ମୁଁ କିନ୍ତୁ ପଶ୍ଚିମକୁ ଯିବାପାଇଁ ନିଜକୁ ପ୍ରସ୍ତୁତ କରୁଥାଏ । ମୋର ଶଳା ନନ୍ଦ ଆମମାନଙ୍କର ଗୁଡ଼ାଏ ଫଟୋ ଉଠାଇ ସାରିଥାଏ । ଇଣ୍ଡିଆନ୍ ଏୟାର ଲାଇନ୍‌ସର ଫ୍ଲାଇଟ୍ ନମ୍ବର ୨୬୩ କଲିକତା ଦିଲ୍ଲୀ ଉଡ଼ାଜାହାଜରେ ଆମେ ଦିଲ୍ଲୀ ଯାଇ, ଆମମାନଙ୍କର ଭିସାକୁ ଅପଟୁଡେଟ୍ କରି, ତା'ପରେ ବି. ଓ. ଏ. ସି. ର ୭୦୧ ଜେଟ୍‌ରେ ଲଣ୍ଡନ ଯିବା କଥା । ଉଡ଼ାଜାହାଜ ଆଠଟା ଦଶରେ । ଫଟୋ ଉଠାଉଠି ପରେ ଆହୁରି

ସମସ୍ତ ଥିଲି ଆମମାନଙ୍କ ହାତରେ । ହଠାତ୍ କଥା ମଝିରେ, ସେମାନଙ୍କଠାରୁ ଅଲଗା ହୋଇଯାଇ, ମୁଁ କିଛି ସମୟ ପାଇଁ ଲାଉଞ୍ଜର ଅନ୍ୟ ପଟକୁ ଚାଲିଗଲି । ଗୁଡ଼ାଏ ଭାବନାରେ ଅତିଷ୍ଠ ହୋଇ ନ କାନ୍ଦିବା ପାଇଁ ପ୍ରତ୍ୟେକ ନାନାପ୍ରକାରର ଚେଷ୍ଟା କରୁଥାନ୍ତି ଯେପରି । ଲାଉଞ୍ଜର ସେହି ପଟେ, ଆସାମକୁ ଯାଉଥିବା ଜଣେ ତେଜସ୍ୱୀ ସନ୍ନ୍ୟାସୀଙ୍କୁ ଦେଖିଲି, ତାଙ୍କ ଗହଣରେ ଭକ୍ତବୃନ୍ଦ—ଅଧିକାଂଶ ମହିଳା—ତାଙ୍କୁ ପ୍ରଣିପାତ କରି ତାଙ୍କଠାରୁ ବିଦାୟ ନେଉ ଥାଆନ୍ତି । ମୁଁ କିଛି ସମୟ ସେମାନଙ୍କ ପାଖରେ ନୀରବ ଦର୍ଶକ ହୋଇ ଠିଆହେବା ପରେ, କଣ ଭାବିଲି, ଦୋଧହୁଏ, ମୋର ଯାତ୍ରାରେ ଶୁଭ ମନାସି, ସନ୍ନ୍ୟାସୀଙ୍କ ପାଦ ଛୁଇଁ ନମସ୍କାର କଲି । ସେ ଆଶୀର୍ବାଦ ଦେଇ ମୋ କପାଳରେ କିଛି ଭସ୍ମ ଲଗାଇଦେଲେ । ମୁଁ ଫେରି ଆସିବାବେଳେ ତାର୍କିକ ପ୍ରତ୍ୟକ୍ଷବାଦ ଦର୍ଶନ ଉପରେ ଟରଣ୍ଟୋ ବିଶ୍ୱବିଦ୍ୟାଳୟକୁ ଗବେଷଣା କରିବାକୁ ଯାଉଥିବା କଥା ମନେ ପଡ଼ିଗଲା । ନୂଆ ଲାବୋରେଟେରି ପ୍ରତିଷ୍ଠା ପୂର୍ବରୁ ଶୁଭ କାମନା କରି କରାଯାଉଥିବା ହୋମରେ, ଭାଗ ନେଇ ସାରି ଫେରୁଥିବା ବୈଜ୍ଞାନିକଙ୍କ ମାନସିକ ଅବସ୍ଥା ବୋଧେ ମୁଁ ସେତେବେଳେ ଅନୁଭବ କରିଥିଲି । ଠିକ୍ ଏହିପରି କେତେକ କଥାକୁ, ଭାରତୀୟମାନଙ୍କ ସାଳିସ ମନୋବୃତ୍ତିକୁ, ଶରତ ମହାନ୍ତି ତାଙ୍କ ବହିରେ କଠୋର ଭାବେ ସମାଲୋଚନା କରିଥା'ନ୍ତି ।

ମୋର ଶାଳୀ ଓ ସ୍ତ୍ରୀ ଆଗେ ଆଗେ, ପଛରେ ମୁଁ ଓ ମୋର ପୁଅ ସିଦ୍ଧାର୍ଥ, ଉଡ଼ାଜାହାଜରେ ଯାଇ ବସିବା ପରେ ପରେ, ଯେତେବେଳେ ଅଣ୍ଟାର ବେଲ୍ଟ ବାନ୍ଧି ସାରିଲୁ, ଉଡ଼ାଜାହାଜ ଉଠି ଷୋଳ ହଜାର ଫୁଟ୍ ଉପରେ ଯାଇ ଉଡ଼ିବାକୁ ଲାଗିଲା, ସେତେବେଳେ ନନା, ବୋଉ, ଝିଅ, ଏମାନଙ୍କ ବିଷୟରେ ଭାବିବା ବନ୍ଦ କରି ଦେଇ, ମୁଁ ପଢ଼ିଲି ମୋ ଆଗରେ ବସିଥିବା ଭଦ୍ରଲୋକଙ୍କ ସିଟ୍ ପଛଆଡ଼େ ଲେଖା ଯାଇଥିବା ବାକ୍ୟଟିକୁ, "ଲାଇଫ୍ ଜ୍ୟାକେଟ୍ ଅଣ୍ଡର ୟୋର୍ ସିଟ୍ ।" ସେତେବେଳେ, ଠିକ୍ ସେଇ ମୁହୂର୍ତ୍ତରେ, ମୋତେ କିଛି ଭୟ ବା ଆଶଙ୍କା ଲାଗି ନଥିଲା, ବରଂ ମୋର ମନେ ହେଲା, ଯୋଗବଳରେ ନୁହେଁ, ତନ୍ତ୍ର କି ମନ୍ତ୍ର ବଳରେ ନୁହେଁ, ବିଜ୍ଞାନର ଏକ ପ୍ରୟୋଗାତ୍ମକ ଉଦ୍ଭାବନ ବଳରେ ମୁଁ କାନାଡ଼ା ଯାଉଛି । ସାତ ସମୁଦ୍ର ତେର ନଈ ପାରି ହୋଇ ବିଦେଶ ଯାଉଛି । ମେଘ ଉପରେ ମୁଁ ଉଡ଼ୁଛି, ଯାହା ରାମଙ୍କ ପୁଷ୍ପକ ବିମାନ, କବିଙ୍କ କଳ୍ପନାରେ ବି କରି ପାରି ନଥିଲା । ମୁଁ ଉଡ଼ାଜାହାଜର କାନ୍ଥକୁ ଛୁଇଁଲି, ଝରକା କାଚକୁ ଛୁଇଁଲି, ତାପରେ ଶ୍ରୀମତୀ, ଶାଳୀ ଓ ମୋର ପୁଅ ଆଡ଼କୁ ଚାହିଁଲି । ମୁଁ ଯାହା ଭାବୁଥିଲି, ସେମାନେ ସେୟା ଭାବୁଥିଲେ କି ନାହିଁ ଜାଣିବାକୁ ମୋର ଇଚ୍ଛା ହେଉଥିଲା; କିନ୍ତୁ ବୋଧେ ଶାଳୀ ଆଲବର୍ଟାରେ ତାଙ୍କୁ ଅପେକ୍ଷା କରୁଥିବା ସ୍ୱାମୀଙ୍କ କଥା ଭାବୁଥିଲେ, ଶ୍ରୀମତୀ କଲିକତା ହୋଟେଲରେ ଛାଡ଼ି ଆସିଥିବା

ନଅମାସର ଶିଶୁ କଥା ଭାବୁଥିଲେ, ଯେ ଆମେ ଟ୍ୟାକ୍ସିରେ ବସିବାବେଳେ, କିଛି ବୁଝି ନ ପାରି, ବାଲ୍‌କୋନିରୁ, ଭଉଣୀ କାଖରୁ, ଲଇଁପଡ଼ି ଆମ ଆଡ଼କୁ ଚାହୁଁଥିଲା—ଆଉ ପୁଅ ସିଦ୍ଧାର୍ଥ କିଛି ନ ଭାବି ସେହି ଅଦ୍ଭୁତ ଯାତ୍ରାକୁ ପୂର୍ଣ୍ଣ ଭାବେ ଅନୁଭବ କରୁଥିଲା ଝରକାଟିଏ ପାଖରେ ତାର ମୁହଁକୁ ମାଡ଼ି ଦେଇ । ଉଡ଼ାଜାହାଜ ତଳେ ମେଘ, ଅସଂଖ୍ୟ ମେଘ, ଆଉ ତା ତଳେ, ଷୋଳହଜାର ଫିଟ୍ ତଳେ, ବିଭିନ୍ନ ଜ୍ୟାମିତିକ ଆକାର ପ୍ରକାରର ଅନେକ ଜମି ଓ ଜଙ୍ଗଲ । ଦୂର ଦିଗ୍‌ବଳୟରେ ମେଘଗୁଡ଼ାକ ହିମ ପର୍ବତ ପରି ଦିଶୁଥାଆନ୍ତି, ବର୍ଷେ ତଳେ ବନ୍ଧୁ ବନବିହାରୀ ଚୌଧୁରୀଙ୍କ ସହ ନୈନିତାଲ୍ ଯାଇଥିବା ସ୍ମୃତି ମୋର ମନେ ପଡ଼ିଗଲା । ପଛ କଥା ମନେପଡ଼ି ଯିବାରୁ କୋହଟାଏ ମାଡ଼ି ଆସିବା ପରି ଲାଗିଲା । ମୁଁ ନିଜକୁ ଦୂରେଇ ନେବାକୁ ଚେଷ୍ଟା କରି ତଳକୁ ଚାହିଁଲି । ଜଙ୍ଗଲ ଚାଲି ଯାଇ ତଳଟା ରେଭେନ୍‌ସା କଲିଜିଏଟର କ୍ଲାସରେ ଟଙ୍ଗା ଯାଇଥିବା ବଡ଼ ମ୍ୟାପ୍‌ଟିଏ ପରି ଦିଶୁଥାଏ; କିନ୍ତୁ ବର୍ତ୍ତମାନ ଭୂଗୋଳ ଶିକ୍ଷକ ଲାଲ ବାବୁ କାହାଁନ୍ତି, ଶୂନ୍ୟରେ କେଉଁଠି ଲୁଚି ରହିଥିବେ ପରା ! କୋହର ଢେଉରେ ମୁଁ ପଡ଼ି ଯାଇଥିଲି, ମୋତେ ତାହା ମୋଡ଼ି ମାଡ଼ି ଅତୀତର ବାଲିରେ ଫୋପାଡ଼ି ଦେଇଥିଲା !

ଜଙ୍ଗଲ ଛାଡ଼ି ଆମେ କୌଣସି ସମତଳ ଜାଗା ଉପରେ ଉଡ଼ିବା ଆରମ୍ଭ କରି ଦେଇଥାଉ । ମୁଁ ଏଥର ଭିତରକୁ ଚାହିଁଲି, ଏୟାର ହୋଷ୍ଟେସ୍ ଜଣେ କେଶ ସଜାଡ଼ୁଥିଲେ, ବକ୍ଷ ଉପରେ ତାଙ୍କର ଲୁଗା ନ ଥିଲା । ଉଡ଼ାଜାହାଜ ଭିତରେ ଇଞ୍ଜିନ୍ ଚାଲୁଥିବାର ଘୁଁ ଘୁଁ ଶବ୍ଦ । କିନ୍ତୁ ଉଡ଼ାଜାହାଜର ଗତିର ବେଗ କିଛି ଜଣା ପଡ଼ୁନଥାଏ । ଏଗାରଟା ବାଜିବାକୁ ପନ୍ଦର ମିନିଟ୍ ଥିବ, ଆମେ ଲକ୍ଷ୍ନୌ ଉପରେ ଉଡ଼ୁଥିଲୁ । ଠିକ୍ ଏଗାରଟା ଢରଣିରେ ପାଲମ ଏୟାର ପୋର୍ଟରେ ଆମେ ପହଞ୍ଚିଲୁ ।

ସେଦିନ ରାତି ନଅଟାରେ ଆମେ ପୁଣି ଉଡ଼ାଜାହାଜ ଧରିଲୁ—ବି. ଓ. ଏ. ସି. ର ୭୦୧ ଜେଟ୍ । ଏଥର ଷ୍ଟିୱାର୍ଡ୍‌ସ୍ ଅଲଗା, ଭିତର ପରିବେଶ ବି ଅଲଗା । ଉନ୍ନଣ୍ଟାରେ ରାତିଟାଯାକ ଅଧା ନିଦ ଅଧା ଚେତାରେ ଗଲା । ସେଣ୍ଟେଡ଼୍ ପାଣିରେ ଭିଜା ହୋଇଥିବା ରୁମାଲ୍ ଷ୍ଟିୱାର୍ଡ୍‌ସ ମଝିରେ ମଝିରେ ଆଣି ଦେଉଥାଏ ମୁହଁ ପୋଛିବାକୁ । ଭାରତ ନୁହେଁ, ଏଥର ଆମେ ଉଡ଼ୁଥାଉ ବହୁ ବିଭିନ୍ନ ରାଜ୍ୟ ଉପରେ—ତେହେରାନ୍, ରୋମ୍, ରାତି ଶେଷକୁ ଫ୍ରାଙ୍କଫର୍ଟ । ଅନ୍ୟାନ୍ୟ ଯାତ୍ରୀମାନଙ୍କ ସହ ମୁଁ ଓହ୍ଲାଇ ଫ୍ରାଙ୍କଫର୍ଟ ଏୟାରପୋର୍ଟର କିଛି ଅଂଶ ଯାଇ ବୁଲି ଆସିଲି । ଇଉରୋପରେ ମୋର ସେ ଦିନ ପ୍ରଥମ ପଦକ୍ଷେପ । ଜର୍ମାନ୍ ଜର୍ମାନୀ ! ବିଜ୍ଞାନ, ଦର୍ଶନ, ସାହିତ୍ୟ—

ସବୁଥିରେ ଗୁର୍ଣ୍ଣିମା—ଆଉ ଶେଷରେ ହିଟଲର୍ ! ହିଟଲର୍ ଜର୍ମନ୍ ଦର୍ଶନର ଶିଖର, ନା ବିଜ୍ଞାନର ଶିଖର ନା ସାହିତ୍ୟର ? ନା ସେମାନଙ୍କ ଭିତରେ ସମନ୍ୱୟ କରି ଯାଇନଥିବା ଅତଳ ଗହ୍ୱରର ସେ ରସାତଳ ? ପୁଣି କେବେ ଜର୍ମନି ଆସିବ, ଏହା ମନେ ମନେ ଠିକ୍ କରି ମୁଁ ଉଡ଼ାଜାହାଜ ଭିତରକୁ ଫେରିଆସିଲି । ପୁଅ, ସ୍ତ୍ରୀ, ଶାଳୀ ସମସ୍ତେ ସିଟରେ ବସି ବସି ଢୁଳଉ ଥିଲେ । ଲଣ୍ଡନ ଏୟାରପୋର୍ଟରେ ସକାଳେ ପହଞ୍ଚିଲୁ । କୁହୁଡ଼ିର ଗୋଟାଏ ଖୁବ୍ ମୋଟା କମ୍ବଳ ଘୋଡ଼ାଇ ହୋଇ ଏୟାରପୋର୍ଟଟା ଶୋଇଥାଏ ଯେପରି । ବାରଟା ତିରିଶିରେ ଉଡ଼ାଜାହାଜ ପରିବର୍ତ୍ତନ କରି ବି. ଓ. ଏ. ସି. ର ୭୦୭ରେ ଚଢ଼ି ଆମେ ସନ୍ଧ୍ୟାରେ ପହଞ୍ଚିଲୁ ଟରଣ୍ଟୋରେ—ଛବିଶ ତାରିଖ ସନ୍ଧ୍ୟା ପାଞ୍ଚଟା ।

କିନ୍ତୁ ଦମ୍ ଦମ୍ ବିମାନଯାତ୍ରୀଟି ସେଦିନର ସେହି ଅନୁଭୂତ ମୋତେ ଯାହାସାରି ଚନ୍ଦ୍ରାଚ୍ଛନ୍ନ କରି ରଖିଥାଏ ଯେପରି । ଉଡ଼ାଜାହାଜର ଏୟାର୍‌ହୋଷ୍ଟେସ୍-ମାନଙ୍କ ସହ କଥାବାର୍ତ୍ତା, ଗୋଟିକ ପରେ ଗୋଟିଏ ପ୍ରସିଦ୍ଧ ଜାଗା ଅତିକ୍ରମ, ପଇଁତିରିଶି ହଜାର ଫିଟ ଉପରେ ଉଡ଼ିବାର ଅନୁଭୂତ, ବିଭିନ୍ନ ସହଯାତ୍ରୀମାନଙ୍କ ସହ ଆଳାପ, (ସେମାନଙ୍କ ମଧ୍ୟରୁ ଜଣେ ମୁଁ କାନାଡ଼ାରେ ନିଶ୍ଚୟ ଗୋମାଂସ ଖାଇବି, ମଦ ପିଇବି, ଆଉ ଗାର୍ଲ ଫ୍ରେଣ୍ଡ କରିବି ବୋଲି ବାଜି ପକାଇଥିଲେ । ଆଉ ସେହି କ୍ଷୁଦ୍ର ବ୍ୟକ୍ତି ଜେଟ୍‌ଗୁଡ଼ିକର ଟେକ୍ ଅଫ୍ ଓ ଲ୍ୟାଣ୍ଡିଂ ହିଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ, ପାଇଲଟ୍‌ର ଟିକିଏ ଭୁଲ୍ ହୋଇଗଲେ, ଏହି ସମୟରେ ଜେଟ୍ ଜଳିଯାଏ ବୋଲି ମୋତେ ସେ ବୁଝାଇ ଦେଇଥିଲେ । ମୁଁ ହସି ମୋର ଟେକ୍ ଅଫ୍ ପିଶସ୍ତଡ଼ ଯୋଗୁଁ ସାବଧାନ ରହୁଛି ବୋଲି କହି ତାଙ୍କ ସହ ମଦ୍ୟପାନରେ ଯୋଗଦେଇ ନଥିଲି ।) କ୍ରମଶଃ ଯେପରି ମୋତେ ଯୁଗ ଯୁଗର ଅବିଦ୍ୟା, କୁସଂସ୍କାର, ଆଉ ଜଡ଼ତା ଭିତରୁ ଏକ ଉଜ୍ଜ୍ୱଳବର୍ତ୍ତୀ, ଅସମ୍ଭବ ଛନ୍ଦପର ଚକ୍ରୀ ନାସ୍ତି ପାଟକୁ ନେଇ ଯାଉଥାଏ, ଯାହାଙ୍କି ମୁଁ ହୃଦୟରେ ସମ୍ବୋଧନ କରୁଥାଏ—ହେ ବିଜ୍ଞାନ ! ତୁମକୁ ମୁଁ ଭଲ ପାଏ, ଏଥର ତୁମର ମୁଁ ପ୍ରେମିକ, ମୋତେ ତୁମେ ଗ୍ରହଣ କର ! ମୁଁ ନିଶ୍ଚିତ ଭାବେ ଏକ ଭିନ୍ନ ରାଜ୍ୟକୁ ଚାଲି ଯାଉଥିବା ଅନୁଭବ କରୁଥିଲି । ଏହି ଏକା ପୃଥିବୀରେ ମଣିଷମାନଙ୍କ ଗଠଣ, ସ୍ୱାସ୍ଥ୍ୟ, ଜନପଦଗୁଡ଼ିକର ରୂପ, ଲୋକଙ୍କ କଥାବାର୍ତ୍ତା, ଏତେ ଭିନ୍ନ ହୋଇପାରେ ବୋଲି ମୁଁ ଆଗରୁ କଳ୍ପନା କରି ନଥିଲି । ଆଉ ସବୁଠି, ସବୁଥିରେ ଦେଖିଲି, ସେହି ଉଜ୍ଜ୍ୱଳ ବର୍ତ୍ତୀଙ୍କ ସଙ୍କେତ, ତାଙ୍କର ଉପସ୍ଥିତି । ବାଷ୍ପ-ଶକ୍ତି ଇତ୍ୟାଦିର, ଆବିଷ୍କାର ସମକାଳୀନ ମୋଗଲ ରାଜୁତିବେଳେ ଭାରତରେ କାହିଁକି ସମ୍ଭବପର ହୋଇନି ବୋଲି ମୁଁ ନିଜକୁ ପଚାରୁଥାଏ, ଅଥବା ଯେ କୌଣସି କାରଣରୁ ହେଉ ପଛେ ଷ୍ଟିମ୍ ଇଞ୍ଜିନ୍ ଇତ୍ୟାଦିର ଆବିଷ୍କାର ଭାରତରେ ବି ଯଦି ହୋଇଥା'ନ୍ତା, ତାହାହେଲେ କଣ ହୋଇଥା'ନ୍ତା ସେହି କଥା ଗୁଡ଼ାଇ ଗୁଡ଼ାଇ ଭାବୁଥାଏ । ଭାରତରେ

ବର୍ଜ୍ଜନର ଅଭ୍ୟୁତ୍ଥି ହେଉ କେଉଁ ଜମିର, କେଉଁ ଅବସ୍ଥାରେ, ତାହିକ ବନ୍ଦ ହୋଇଗଲା, ତାହା ଏକ ରହସ୍ୟାବୃତ କଥା, ଯାହାର ସମାଧାନ ଶୀଘ୍ର ହୋଇଯିବା ଉଚିତ । କେହି କେହି କହନ୍ତି, ଭାରତର ରାଜନୈତିକ ସ୍ୱାଧୀନତା ଚାଲିଯିବା ଦ୍ୱାରା, ଆଉ କେହି କେହି ଭାରତର ମାଯ୍ୟାବାଦର ଦର୍ଶନ ଯୋଗୁଁ ବର୍ଜ୍ଜନର ଉନ୍ନତ ଭାରତରେ ହୋଇପାରିନି ବୋଲି କହନ୍ତି ।

ଭାରତୀୟମାନଙ୍କ ବୈଜ୍ଞାନିକ ମନୋବୃତ୍ତି ନେଇ ଥରେ ଚର୍ଚ୍ଚା ଚାଲିଥିଲା । ସେହି ସମୟରେ ଭାରତରେ ଗୋହତ୍ୟା ନିରୋଧ ନେଇ ଆନ୍ଦୋଳନ ଚାଲିଥାଏ । ଆନ୍ଦୋଳନକୁ ଅଣ୍ଟା କରି, ହିନ୍ଦୁମାନଙ୍କୁ ବ୍ୟଙ୍ଗ କରି ବିଭିନ୍ନ ଭାରତୀୟ ନଗରର, ଗାଁର, ରାସ୍ତାଘାଟର ଦୃଶ୍ୟ ଦେଖା ଯାଉଥାଏ । ଦ୍ରୁତଗାମୀ ଯାନବାହାନ ଯିବାବେଳେ କିପରି ରାସ୍ତାକୁ ଗୋରୁମାନେ ଶୟନକକ୍ଷରେ ପରିଣତ କରି ଦେଇଥିବାରୁ ନାନା ଦୁର୍ଘଟଣା ହୁଏ, ଭଲେଟରେ ଗାଈମାନେ କିପରି ବୁଲନ୍ତି— ସବୁଆଡ଼େ ସବୁଠି କିପରି ସେହି କଙ୍କାଳସାର ଜନ୍ତୁଙ୍କୁ ଦେଖିବାକୁ ମିଳେ ଇତ୍ୟାଦି । ଭାରତର ଗୋହତ୍ୟା ନିରୋଧ ଆନ୍ଦୋଳନବେଳେ ଆମେମାନେ ଟରଣ୍ଟୋର ଯେଉଁଆଡ଼େ ଯାଇଥିଲୁ ଲୋକଙ୍କଠୁ ପ୍ରଚ୍ଛନ୍ନ ବ୍ୟଙ୍ଗ ବିଦ୍ରୂପ ଶୁଣିବାକୁ ପାଉଥିଲୁ । ଗୋରୁପୂଜା ନେଇ ଭଣ୍ଡାରଠୁ ଆରମ୍ଭ କରି ମାଂସ ବଜାଲି ପର୍ଯ୍ୟନ୍ତ, ସମସ୍ତେ ପ୍ରଶ୍ନ ପଚାରୁଥିଲେ । ଭାରତୀୟମାନେ ଥରେ ଗୋମାଂସ ଖାଇବା ଆରମ୍ଭ କରିଦେଲେ କିପରି ଏକାବେଳକେ ଭାରତୀୟମାନଙ୍କ ଖାଦ୍ୟରେ ପ୍ରୋଟିନ୍ ସ୍ୱଳ୍ପତା ସମସ୍ୟା, ଟ୍ରାଫିକ୍ ସମସ୍ୟା ଓ ସାମ୍ପ୍ରଦାୟିକ ସମସ୍ୟା ଦୂର ହୋଇଯିବ, ସେକଥା ତାନାଡ଼ାର ହିତାକାଂକ୍ଷୀ ବନ୍ଧୁମାନେ ବୁଲାଇ ବୁଲାଇ ଆମମାନଙ୍କୁ କହୁଥାନ୍ତି । ସେମାନଙ୍କୁ ଚୁପ୍ କରିବାପାଇଁ କିନ୍ତୁ ମୁଁ ପରିଶ୍ରମ କରି ମୋତେ ଭାବିବାକୁ ପଡ଼ିଥିଲା । ଯଥା, ମୁଁ କହୁଥିଲି—ପ୍ରଥମେ ପ୍ରଥମେ ହିନ୍ଦୁମାନେ ଗୋମାଂସ ଖାଉଥିଲେ, ସେକଥା ବେଦରେ ମଧ୍ୟ ଉଲ୍ଲେଖ ଅଛି । ତା'ପରେ କୌଣସି ବିଶେଷ କାରଣରୁ ଭାରତୀୟମାନେ ଗୋମାଂସ ଖାଇବା ବନ୍ଦ କରିଦେଲେ ଏବଂ କାଳେ ତାହାର ଖାଇବା ପାଇଁ ପ୍ରବୃତ୍ତି ଆସିବ, ସେଥିପାଇଁ ଧର୍ମ ନିଷେଧ ନିର୍ଦ୍ଦେଶ ଆଣି ଖାଇବାକୁ ପୁରାପୁରି ମନା କରିଦେଲେ । ଗୋରୁକୁ ଦେବତା ବୋଲି ପୂଜା କରିବା ଆରମ୍ଭ କରି ଦିଆଗଲା । କ୍ରମଶଃ ଗୋମାଂସ ନ ଖାଇବା ସମ୍ପୃକ୍ତରେ ବାହାରେ ଏକ ଧାର୍ମିକ ମତ ଓ ବିଶ୍ୱାସରେ ପରିଣତ ହୋଇଗଲା; ଯାହାକୁ କେନ୍ଦ୍ରକରି ଅନ୍ୟାନ୍ୟ ବହୁ ଧାର୍ମିକ ବିଶ୍ୱାସ ମଧ୍ୟ ସୃଷ୍ଟି ହେଲା, ଯେପରି ଶ୍ରୀକୃଷ୍ଣଙ୍କର ଗୋଜାତି ପ୍ରତି ସ୍ନେହ । ତା'ପରେ ମୁଁ କହୁଥିଲି—ଏହି ସବୁ ଧାର୍ମିକ ବିଶ୍ୱାସଗୁଡ଼ିକ ହିନ୍ଦୁମାନଙ୍କ ଜାତିକୁ ସହିତ ରଖିଛୁ, ତେଣୁ ସେଗୁଡ଼ିକ ପ୍ରତି, ନ ବୁଝି ନ ଶୁଝି, ସମାଲୋଚନା କରିବା ଅନୁଚିତ । ମୁଁ ଇହୁଦୀମାନେ ଘୁଷୁରି ମାଂସ ନ ଖାଇବା କଥା ଆଣି ପକାଏ । ଆଉ ଅତି

ବେଶି ବିରକ୍ତ ହେଲେ; ଆମେରିକାର ଲୋକେ ପ୍ରୋଟିନ୍ ପାଇଁ କୁକୁର ମାଂସ ଖାଇବା ପାଇଁ ପ୍ରସ୍ତୁତ ହୋଇ ଯିବେ କି ବୋଲି ପଚାରେ । ସେମାନେ ମୋ ଯୁକ୍ତିରୁ ଯାହା ବୁଝନ୍ତୁ ନ ବୁଝନ୍ତୁ, ମୋ ମୁହଁର ଡମ ଡମ ଭାବ, ଆନ୍ତରିକତା, ଚଢ଼ା ସ୍ୱରରୁ, ବହୁତ କଥା ବୁଝି ପାରନ୍ତି; କିନ୍ତୁ ମୁଁ ଯୁକ୍ତି କରି ଚାଲେ—ଗୋମାଂସ ଖାଇବା ସହ ବୈଜ୍ଞାନିକ ମନୋବୃତ୍ତିର କୌଣସି ସମ୍ପର୍କ ନାହିଁ । ଯଦି ଥାଆନ୍ତା, ତାହେଲେ ଦୁନିଆର ଗୋମାଂସ ଖାଉଥିବା ଆଦିବାସୀ ଲୋକେ ଖୁବ୍ ବଡ଼ ବଡ଼ ବୈଜ୍ଞାନିକ ହୋଇଥାଆନ୍ତେ; କିନ୍ତୁ ଫଳ ଓଲଟା ହୋଇଛି । ବରଂ ଧାର୍ମିକ ସଂସ୍କାର ନେଇ ଘୁଷୁରି ମାଂସ ଛୁଇଁ ନ ଥିବା ଇହୁଦୀ ଜାତି ଆରବର ଲୋକମାନଙ୍କୁ ବିଜ୍ଞାନର ଆଲୋକ ଦେବାପାଇଁ ଈଶ୍ୱରଙ୍କ ଦ୍ୱାରା ଅଭିପ୍ରେତ ଜାତି ବୋଲି ଭାବନ୍ତି । ବେନ୍ ଗୁରିଅନ୍ ତାଙ୍କ ଆତ୍ମଜୀବନୀରେ ଏହି କଥା ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି । ଅନେକ ବନ୍ଧୁ କାନାଡ଼ା ଯାଇ ଗୋମାଂସ ଖାଇବା ଆରମ୍ଭ କରି ଦେଇଥା'ନ୍ତି । ସେମାନଙ୍କୁ ମୋର ଯୁକ୍ତି ବାଧେ । ସେଇ ଭାରତୀୟମାନେ ଇ ମୋ ସହିତ ବେଶି ଯୁକ୍ତି କରି ଥାଆନ୍ତି, ଗୋରା ଲୋକମାନେ ନୁହେଁ, ଯେପରି ଭାରତରେ ସଦ୍ୟ ଧର୍ମ ପରିବର୍ତ୍ତନ କରିଥିବା ଲୋକେ ବେଶି ଗଣ୍ଡଗୋଳ କରି ଥାଆନ୍ତି, ପୁରୁଣା ଦିନୁ ଆସିଥିବା ମୁସଲମାନ ଲୋକ ନୁହେଁ ।

ସେହି ସମୟରେ ମୋର ମନରେ ପ୍ରଶ୍ନ ଉଠିଥିଲା—ମଣିଷ କେବଳ ଯୁକ୍ତି ବୈଜ୍ଞାନିକ ମନୋଭାବ ନେଇ ବଞ୍ଚିପାରିବ କି ? ଆଉ ସେ ସେପରି କରିବା ଉଚିତ କି ? ବନ୍ଧୁ ବନବିହାରୀ ଚୌଧୁରୀ ତାର୍କିକ ପ୍ରତ୍ୟକ୍ଷବାଦ ଦର୍ଶନ ଉପରେ ଏମ୍ ଏ ପଢ଼ୁଥିବା ବେଳେ ଏକ ଥେସିସ୍ ଲେଖି ଥାଆନ୍ତି । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଲ' ପଢ଼ୁଥିବାବେଳେ ତାଙ୍କର ସେହି ଏମ୍. ଏ. ଥେସିସ୍ ମୁଁ ପଢ଼ିଥିଲି ଓ ସେହି ଦିଗରେ କିଛି ଅଧିକା କାମ କରିବାପାଇଁ ମନରେ ଇଚ୍ଛା ଥିଲା । ଟରେଣ୍ଟୋ ବିଶ୍ୱବିଦ୍ୟାଳୟ ଆସି କିନ୍ତୁ ଲଜିକାଲ ପଜିଟିଭିଜମ୍ ନାମ ରିସର୍ଚ୍ଚ ଟପିକ୍ ରୂପେ ଉଠାଇବା ମାତ୍ରେ ପ୍ରଫେସର୍ ଡେ ହସି ଉଠିଥିଲେ । ସେ ସବୁକଥା ଖୋଲି କହି ନ ଥିଲେ । ମୁଁ କିନ୍ତୁ ଧୀରେ ଧୀରେ ବୁଝିଲି, ତାର୍କିକ ପ୍ରତ୍ୟକ୍ଷବାଦ ଦର୍ଶନ କିପରି ଭୁଲ୍, ନିଜେ ତାହାର ପ୍ରବର୍ତ୍ତକ ଉଇଟ୍‌ଗେନ୍‌ଷ୍ଟାଇନ୍ କିପରି ତାକୁ ବହୁ ଦିନୁ ପରିତ୍ୟାଗ କରି ସାରିଛନ୍ତି । ତାପରେ ମୋର ଅଭିରୁଚି କ୍ରମଶଃ ପ୍ରଚଳିତ ଭାଷା ବିଶ୍ଳେଷଣ ଦର୍ଶନ ଆଡ଼କୁ ଢଳିଲା । ବିଜ୍ଞାନ ଛଡ଼ା ଆଉ ଯେଉଁ ସବୁ କଥାକୁ ମଣିଷ ପରମ ପ୍ରିୟ ବୋଲି ଧରେ, ତାକୁ ବିଜ୍ଞାନର ଉନ୍ନତି ବା ଅବନତି ପାଇଁ ସମ୍ପୃକ୍ତ କରାଯାଇ ପାରିବ କି ? ଆଉ ଜଗତରେ ଏ ଦୁଇଟି ଜିନିଷର ସମ୍ପର୍କ କ'ଣ ? ଏ ସବୁର ସନ୍ତୋଷଜନକ ଉତ୍ତର ତାର୍କିକ ପ୍ରତ୍ୟକ୍ଷବାଦ ଦର୍ଶନ ଦେଇ ପାରି ନ ଥିଲା । ପ୍ରଚଳିତ ଭାଷା ବିଶ୍ଳେଷଣ ଦର୍ଶନ ଜାଣିବା ପରେ ମୁଁ ସେଥିରେ କିଛି ସନ୍ତୋଷ ଜନକ ଉତ୍ତର ପାଇବାକୁ ଲାଗିଲି ।

କାନାଡ଼ାରେ ଥିବାବେଳେ ନୀରଦ ଚୌଧୁରୀଙ୍କ "କଣ୍ଟିନେଣ୍ଟ ଅଫ୍ ସାର୍ସ" ବହିଟି ନୂଆ ହୋଇ ବାହାରିଥାଏ । ନୀରଦ ଚୌଧୁରୀ ଭଲ ଇଂରାଜୀ ଲେଖି ପାରୁଥିବା ଯୋଗୁ ଓ ଭାରତର ବହୁ କଥାକୁ ବ୍ୟଙ୍ଗ ବିଦ୍ରୂପ କରୁଥିବା ଯୋଗୁଁ, ବାହାରେ ବେଶ୍ ଲୋକପ୍ରିୟ। ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ବ୍ୟଙ୍ଗ ବିଦ୍ରୂପ କରି ଲେଖିଲେ ପାଶ୍ଚାତ୍ୟ ଜଗତରେ ଲେଖକ ବିଶେଷ ଆଦର ଓ ଖ୍ୟାତି ପାଇଥାଏ । ଏବଂ ଏପରି ଲେଖାଲେଖି କରିବାରେ ଭାରତୀୟମାନେ ହିଁ ନେତୃତ୍ୱ ନେଇଥାନ୍ତି । ଟରଣ୍ଟୋ ବିଶ୍ୱ-ବିଦ୍ୟାଳୟର ଦର୍ଶନ ବିଭାଗର ଅନ୍ୟତମ ପ୍ରଫେସର ଏଫ୍.ଇ. ସ୍ପାରସଟ୍ ଇଂରାଜର, ଲେଖା ଶୈଳୀର ନୀରଦଙ୍କ ଜଣେ ସ୍ତାବକ ଥିଲେ । ସ୍ପାରସଟ୍ଙ୍କ ୪୭୬ ପୃଷ୍ଠାର ବହି "ଷ୍ଟ୍ରକ୍ଚର୍ ଅଫ୍ ଆସ୍ଥେଟିକସ୍" ଛାତ୍ରମାନଙ୍କ ଏତେ ପ୍ରିୟ ଯେ ତାହା ସେମାନଙ୍କ ତକିଆ ତଳେ ରଖି ଶୁଅନ୍ତି ବୋଲି ଶୁଣି ମୁଁ ତାଙ୍କ ଆଡ଼କୁ ଆକୃଷ୍ଟ ହୋଇଥିଲି । ସେ କିଛି ମୋ ଥେସିସ୍ର ଗାଇଡ୍ ବି ହୋଇଥିଲେ । ନୀରଦ ଚୌଧୁରୀଙ୍କ ନୂତନ ପ୍ରକାଶିତ ବହିଟି ପଢ଼ିବା ପାଇଁ ଲାଇବ୍ରେରୀରେ ମୋତେ କ୍ୟୁରେ ଯୋଗଦେବାକୁ ମଣ୍ଡିଲା । ଚୌଧୁରୀଙ୍କ ମତରେ ବୈଜ୍ଞାନିକ ପ୍ରତିଭା ଏକ ଜାତିଗତ ଗୁଣ, ଯାହା ହଙ୍ଗେରୀରୁ ଆସିଥିବା ଭାରତୀୟ ଆର୍ଯ୍ୟମାନଙ୍କର ପ୍ରଥମେ ପ୍ରଥମେ ଯଥେଷ୍ଟ ଥିଲା କିନ୍ତୁ କ୍ରମଶଃ ଭାରତର ଭୟଙ୍କର ଉତ୍ତାପ ଓ କୁତ୍ସିତ ଜଳବାୟୁ ଭାରତୀୟ ଆର୍ଯ୍ୟଙ୍କ ସେହି ପ୍ରତିଭାକୁ ଧ୍ୱଂସ କରି କରି ଶେଷରେ ନଷ୍ଟ କରିଦେଲା । ଅସଂଖ୍ୟ ସଭ୍ୟତାର ଶ୍ମଶାନ ଏହି ଭାରତ ଭୂମି । ଏପରିକି ଭାରତୀୟ ଜଳବାୟୁ ଏତେ ଖରାପ ଯେ ଖୁବ୍ ସଦ୍‌ଗୁଣ ସମ୍ପନ୍ନ ଇଂରେଜ ଲୋକମାନେ ବି ଏ ଦେଶକୁ ଆସି ସେମାନଙ୍କର ସ୍ୱାଭାବିକ ମାନବିକ ଗୁଣାବଳୀ ହରାଇ ବସିଲେ, ଯାହାର ଚୂଡ଼ାନ୍ତ ପରିଣତି ହୋଇ ଦେଖା ଦେଲେ ଜେନେରାଲ ଡାୟର । ଇଂରେଜମାନଙ୍କ ନୈତିକ ଅଧୋଗତି ମୂଳରେ ଭାରତୀୟ ଜଳବାୟୁ ରହିଛି । ନୀରଦ ଚୌଧୁରୀଙ୍କ ଥେସିସ୍ ଚମକପ୍ରଦ ହେଲେ ବି ନିହାତି ଭୁଲ୍ ଓ ବଡ଼ ବିପଦଜନକ କାରଣ ପ୍ରତିକୂଳ ଜଳବାୟୁରେ ପ୍ରତିଭା ଥିବା ଜାତି ସେହି ଜଳବାୟୁକୁ ସଜାଡ଼ିବା ପାଇଁ, ତାକୁ ଜିଣିବା ପାଇଁ ଚେଷ୍ଟା କରେ । ଚୌଧୁରୀଙ୍କ ଥେସିସ୍ ସତ ହୋଇଥିଲେ, ଭାରତରେ ସବୁ ପ୍ରଥମେ ଏୟାର କୁଲର୍, ଏୟାର କଣ୍ଡିସନିଙ୍ଗ୍, ଷ୍ଟିମ୍ ଇଞ୍ଜିନ, ଇତ୍ୟାଦି, ବାହାରି ଆସିଥାନ୍ତା । ଇଉରୋପ ଓ ଆମେରିକାରେ ପ୍ରତିକୂଳ ଜଳବାୟୁ ବିରୁଦ୍ଧରେ ମଣିଷ ସଂଗ୍ରାମ କରି କରି ବିଜ୍ଞାନକୁ ମଣିଷର ସୁଖ ସାଧନ ପାଇଁ ଲଗାଇଛି ଓ ତାହାଦ୍ୱାରା ସବୁ ବୈଜ୍ଞାନିକ ଉଦ୍ଭାବନ ସମ୍ଭବପର ହୋଇଛି । ଟରଣ୍ଟୋର ସବ୍ ଜିରୋ ଟେମ୍ପରେଚରରେ ଝଲୁ ଝଲୁ ନାକରୁ ଆଖିରୁ ପାଣି ବୋହିଯାଏ, ମୋର ସାରା ଶରୀରକୁ କିଏ ଯେପରି କାଟି ପକାଉଥାଏ । ସେହି ସମୟରେ ମୁଁ ନିଜ ଭାଗ୍ୟକୁ ନିନ୍ଦାକରି କହିଛି—ଭଗବାନ ! ଏହି ନର୍କବାସରୁ କେବେ ଉଦ୍ଧାର ପାଇବି ? ମୁଁ ଝୁରି ହୋଇଛି । ବିଶେଷ କରି ଓଡ଼ିଶାର ପୁରପଲ୍ଲୀର ନଡ଼ିଆ ଗଛକୁ ଛୁଇଁ ଆସୁଥିବା ପବନ, ପୁରୀର ପବନ, ମୋର

ମନେ ପଡ଼ୁଛି । କେବଳ ଭାରତ ହିଁ ଗୋଟିଏ ଜାଗା, ଯେଉଁଠି ରାତିରେ ଆକାଶ ତା'ର ନକ୍ଷତ୍ର ଖଚିତ ଶାଲ୍‌କୁ ଯୋଡ଼ାଇ ହୋଇ ତଳକୁ ଲମ୍ବି ଆସେ ଓ ମଣିଷ ସହ କଥାବାର୍ତ୍ତା କରେ । ସେଇଥି ପାଇଁ ଭଲ ପାଇବାବେଳେ ପ୍ରେମିକାକୁ ବିଭିନ୍ନ ନକ୍ଷତ୍ର ସହ ପରିଚୟ କରାଇ ଦେବାର ରୀତି ଏହି ଦେଶରେ ଥିଲା । କାନାଡ଼ାରେ ଚାରି ବର୍ଷର ରହଣି ଭିତରେ ଖୋଲା ଆକାଶକୁ ଚାହିଁ ଶୋଇବାର କଳ୍ପନା ମୋର ମନ ଭିତରେ କେବେହେଲେ ଉଠି ନ ଥିଲା । ଭାରତରେ ଇ ମଣିଷ ପ୍ରକୃତିକୁ ଏତେ ଭଲ ପାଏ ଯେ ବାସୁଦେବ ସର୍ବତ୍ର ଥିବାର କଳ୍ପନା, ଏଇଠି ମଣିଷର ହୋଇଥିଲା । ବରଂ ପ୍ରକୃତିର ଏତେ ସୌନ୍ଦର୍ଯ୍ୟ, ଏତେ ଆଦର, ଭାରତୀୟ ଆର୍ଯ୍ୟଙ୍କ ସଂଗ୍ରାମୀ ଇଚ୍ଛାକୁ କମାଇ ଦେଲା; କିନ୍ତୁ ଏ ମତବାଦ ଗ୍ରହଣ କଲେ ନୀରଦ ଚୌଧୁରୀଙ୍କ ଥେସିସ୍‌କୁ ପରୋକ୍ଷରେ ପୁଷ୍ଟ କରିବା ହେବ, ପଛେଇ ପଛେଇ ତାଙ୍କର ଘାତକ ଆଲିଙ୍ଗନ ଭିତରକୁ ଯିବା ପରି । ଭାରତୀୟ ଜଳବାୟୁ ଭାରତୀୟ ଆର୍ଯ୍ୟମାନଙ୍କ ପ୍ରତିଭାର ଅଧୋଗତି ମୂଳରେ ରହିଛି ବୋଲି କହିବାକୁ ମୁଁ ପ୍ରସ୍ତୁତ ନୁହେଁ । ଏହି କଥା ଚାଲି ନ ଜାଣି ଝୁଣ୍ଟିଲେ ପଥରକୁ ଦୋଷ ଦେବା ପରି ମୋର ମନେ ହେଉଛି ।

ଭାରତରେ ବିଜ୍ଞାନର ଉନ୍ନତି ହୋଇ ହୋଇ ଗୋଟାଏ ସମୟରେ ହଠାତ୍ ବନ୍ଦ ହୋଇଗଲା । ଏ ଭିତରେ ଭାରତୀୟ ଜଳବାୟୁରେ ବିଶେଷ କିଛି ବଡ଼ ଧରଣର ପରିବର୍ତ୍ତନ ହୋଇଥିବା କଥାର ପ୍ରମାଣ ନାହିଁ । ବରଂ ଭାରତର ଇତିହାସ ପଢ଼ିଲେ ଜଣେ ଦେଖିବ, ଭାରତ ଉପରେ ବହୁ ପ୍ରକାର ବୈଦେଶିକ ଶକ୍ତି ବାରମ୍ବାର ଆକ୍ରମଣ କରିଛନ୍ତି; ବିଶ୍ୱବିଦ୍ୟାଳୟଗୁଡ଼ିକୁ ଧ୍ୱଂସ କରି ପକାଇଛନ୍ତି; ଶାସକମାନଙ୍କର ଅସ୍ଥିରତା ଯୋଗୁଁ ଗବେଷଣାରେ ପୃଷ୍ଠପୋଷକତା ମିଳିନାହିଁ । ଏହି ସବୁ କାରଣ ହିଁ ବିଜ୍ଞାନର ଉନ୍ନତିକୁ ଭାରତରେ ବ୍ୟାହତ କରିଦେଲା । କ୍ରମଶଃ ଲୋକମାନେ ରାଜନୈତିକ ସ୍ୱାଧୀନତାକୁ ଅପେକ୍ଷା କରି ସମସ୍ତ ସୃଜନାତ୍ମକ କାର୍ଯ୍ୟକୁ ଯେପରି ବନ୍ଦ କରିଦେଲେ ।

ପୁରାତନ ଭାରତର ବୈଜ୍ଞାନିକ ଉନ୍ନତି ସମ୍ପର୍କରେ କାନାଡ଼ାର ବହୁ ଶିକ୍ଷିତ ଲୋକେ ସଚେତନ ଥିଲେ । ସେମାନଙ୍କ ଘରକୁ ଆମେ ଗଲେ, ଇଉରୋପର ଲୋକ ଅସଭ୍ୟ ଓ ଅସଂସ୍କୃତ ହୋଇ ବଣ ଜଙ୍ଗଲରେ ରହୁଥିବା ବେଳେ, ଭାରତ କିପରି ବିଜ୍ଞାନ, ସାହିତ୍ୟ, ସଭ୍ୟତା, ସବୁଥିର ଚୂଡ଼ାନ୍ତ ସୀମାକୁ ଯାଇଥିଲା, ତାହା ସେମାନେ କହନ୍ତି । ସେମାନଙ୍କ କଥା ଠିକ୍ ବୋଲି ପ୍ରମାଣ ଦେବାକୁ ଯାଇ ସେମାନେ ସଚିତ୍ର ମୋଟା ମୋଟା ବହି ଆଣି ସେମାନଙ୍କ ପିଲାମାନଙ୍କୁ ଓ ଆମକୁ ଦେଖାନ୍ତି । ବହିଗୁଡ଼ିକରେ ଯାହା ସବୁ ଲେଖା ହୋଇଥାଏ, ସେଥିରେ ଦ୍ୱିମତ କେହି ହେବେ ନାହିଁ; କିନ୍ତୁ ଚିତ୍ର-ଗୁଡ଼ିକ ଦେଖିଲେ ଭାରତ ବିଷୟରେ ସେମାନେ, ବିଶେଷ କରି ସେମାନଙ୍କ ଆର୍ଟିଷ୍ଟମାନେ, କେତେ ଅଜ୍ଞ ତାହା ଜଣା ପଡ଼ିଯାଏ । ସେହି ସବୁ ଚିତ୍ରରେ ସୀତାଙ୍କୁ

ସଲଓ୍ୱାର ପଞ୍ଜାବୀ ପିନ୍ଧା ଯାଇଥିବ, ଦଶରଥଙ୍କର ଛେଳି ଦାଢ଼ୀ ଥିବ ଓ ଅଯୋଧ୍ୟା କୋଠାଗୁଡ଼ିକ ସବୁ ମସ୍‌ଜିଦ୍ ପରି ଦିଶୁଥିବେ । ରାଜାଙ୍କ ଶିରସ୍ତ୍ରାଣ ବି ମୋଗଲ ବାଦ୍‌ଶାଙ୍କ ପଗଡ଼ି ଭଳି ହୋଇଥିବ । ଅମେ ଚିତ୍ର ଦେଖି ହସି ଉଠୁ ଓ ଭୁଲ କେଉଁଠି ତାହା ସେମାନଙ୍କୁ ବୁଝାଇ ଦେଉ । ଅମେରିକା ଓ ଇଉରୋପର ଲୋକ ଭାରତ ଆସି ମୁସଲମାନମାନଙ୍କ ଯଥାର୍ଥ ଢଙ୍ଗରେ ବୁଝନ୍ତି, ସେମାନଙ୍କ ମସ୍‌ଜିଦ୍, କାରୁକାର୍ଯ୍ୟ, ରାଜନୀତି, ମୋଟ ଉପରେ ସେମାନଙ୍କ ଅସ୍ମିତା ବୁଝିବା ସେମାନଙ୍କ ପକ୍ଷରେ ସହଜ; କିନ୍ତୁ ସେମାନେ ହିନ୍ଦୁ ଭାରତକୁ ସବୁବେଳେ ଭୁଲ୍ ବୁଝନ୍ତି । ସଭ୍ୟତା ଓ ସଂସ୍କୃତିକୁ ତୁଳନାତ୍ମକ ଢଙ୍ଗରେ ବିଚାର କରୁଥିବା ଲୋକେ ଏ ବିଷୟରେ ଭାବିବା ଉଚିତ । କେବଳ ଔପନ୍ୟାସିକ ଇ. ଏମ୍. ଫରଷ୍ଟର୍ ନୁହନ୍ତି, ଭାରତକୁ ବୁଲି ଆସିଥିବା ଅଧିକାଂଶ ବିଦେଶୀ ଲୋକ, ମୁସଲମାନମାନଙ୍କୁ ଠିକ୍ ବୁଝନ୍ତି, ହିନ୍ଦୁମାନଙ୍କୁ ଭୁଲ ବୁଝିଇ ସେମାନେ ଘରକୁ ଫେରନ୍ତି ।

ଆମେରିକା, କାନାଡ଼ା ଓ ଇଂଲଣ୍ଡରେ ଅଜିକାଲି ବହୁ ପ୍ରସିଦ୍ଧ ଭାରତୀୟ ବୈଜ୍ଞାନିକ ରହୁଛନ୍ତି । ଅଷ୍ଟ୍ରୋ ଫିଜିସିଷ୍ଟ ଚନ୍ଦ୍ରଶେଖରଙ୍କ ନାମ ଆମମାନଙ୍କ ଅଲୋଚନାରେ ବହୁବାର ପଡ଼ିଛି । ସେ ସମୟରେ ନାର୍ଲିକର୍ ଇଂଲଣ୍ଡରେ ବେଶ୍ କିଛି ସୁନାମ ଅର୍ଜନ କରିଥିଲେ । ଭାରତୀୟ ଲୋକେ ସୁବିଧା ସୁଯୋଗ ପାଇଲେ, ଗବେଷଣାରେ ଅନ୍ୟମାନଙ୍କ ପରି କାର୍ଯ୍ୟ କରି ପାରନ୍ତି, ଏହାର ସୂଚନା ଅମେ ସମସ୍ତେ ପାଉଥିଲୁ । ସମସ୍ତେ ଆନନ୍ଦିତ ହେଉଥିଲୁ ମଧ୍ୟ । ସ୍ୱାଧୀନ ଭାରତରେ ପ୍ରକୃତ ପରିବେଶ ପାଇଲେ, ଏମାନଙ୍କ ମଧ୍ୟରୁ ଅନେକ ଭାରତ ଫେରିଯାଇ ଗବେଷଣା କରିବେ, ବିଜ୍ଞାନର ଉନ୍ନତି ସାଧନ କରିବେ । ଯେଉଁ ରଥ ମଝି ବାଟରେ ବନ୍ଦ ହୋଇ ଯାଇଥିଲା, ତାହା ପୁଣି ଚାଲିବାକୁ ଆରମ୍ଭ କରିବ; କିନ୍ତୁ ଏହି ସବୁ ଭିତରେ ମୋ ମନରେ ପୁଣି ପୁରୁଣା ଅନ୍ତର୍ଦ୍ୱନ୍ଦ୍ୱ ସୃଷ୍ଟି ହେଉଥାଏ । ଗୋଟିଏ ପକ୍ଷେ ବିଜ୍ଞାନ ଭାରତରେ ବଢ଼ୁ ବୋଲି ଇଚ୍ଛା; କାରଣ ତାହାର ମାଧ୍ୟମରେ ହିଁ ଭାରତୀୟ ଲୋକଙ୍କ ଅବସ୍ଥା ବଦଳି ଯାଇ ପାରିବ । ଅନ୍ୟ ପକ୍ଷେ ଭାରତରେ ରହି ଆସିଥିବା ପୁରୁଣା ବିଶ୍ୱାସଗୁଡ଼ିକ ଲୋପ ନ ପାଉ ବୋଲି ମଧ୍ୟ ଇଚ୍ଛା । ଇଉରୋପ ଓ ଆମେରିକାରେ ବିଜ୍ଞାନର ଏକ ପାଖିଆ ବିକାଶ ଓ ପରେ ଧର୍ମକୁ ତା ଉପରେ ଲେପି ଦେବାର ପ୍ରଚେଷ୍ଟା ସେଠି ସାଂସ୍କୃତିକ ସଙ୍କଟ ସୃଷ୍ଟି କରିଛି, ଯାହା ଧୂଇ ଦୁଇଟା ମହାଯୁଦ୍ଧ, ବର୍ଣ୍ଣବୈଷମ୍ୟ, ପାରିବାରିକ ଅଶାନ୍ତି, ଇତ୍ୟାଦ, ନାନା କଥାରେ ଆତ୍ମପ୍ରକାଶ କରିଛି । ଭାରତରେ ଏ ସବୁକୁ କିପରି ଏଡ଼ା ଯାଇ ପାରିବ, ସେହି କଥା ମୁଁ ଚିନ୍ତା କରୁଥିଲି । ବୈଜ୍ଞାନିକ ଭାବଧାରା ସହ ଚିରନ୍ତନ ବିଶ୍ୱାସଗୁଡ଼ିକୁ କିପରି ସମନ୍ୱୟ କରାଯାଇ ପାରିବ, ସେହି ଚିନ୍ତା ମୋ ମନ ଭିତରେ ଥିଲା । ଏହିପରି ସମୟରେ ମୁଁ ଉଇଟଗେନ୍‌ଷ୍ଟାଇନଙ୍କ ପ୍ରଚଳିତ ଭାଷା ବିଶ୍ଲେଷଣ ଦର୍ଶନ ସହ ପରିଚିତ ହୁଏ, ଯାହା ତାର୍କିକ ପ୍ରତ୍ୟକ୍ଷବାଦ ଦର୍ଶନକୁ ଭୁଲ୍

କହି ସମାଲୋଚନା କରିଛି । ମୁଁ ଜାଣିଲି ଯେ ଦମ୍ ଦମ୍ ଏୟାରପୋର୍ଟଠି ସନ୍ନ୍ୟାସୀଙ୍କର ପାଦ ଛୁଇଁବା ମୋର ଦୁର୍ବଳତା ନୁହେଁ, ମଣିଷର ଶ୍ରଦ୍ଧା କି ଭକ୍ତି, ମଣିଷର ଦୁର୍ବଳତା ନୁହେଁ । ଏହି ସବୁ କଥାକୁ ଶୁଦ୍ଧ ବୈଜ୍ଞାନିକ ଦୃଷ୍ଟିକୋଣ ପଛୁ, ଯାହା ଏକ ବିଶେଷ ଭାଷାକୁ ସମର୍ଥନ କରେ, ବିଗ୍ଧର କରିବା ଉଚିତ ନୁହେଁ । ମାନବ ଜୀବନକୁ ଖାଲି ବିଜ୍ଞାନ ନୁହେଁ, ଜୀବନକୁ ଆହୁରି ବହୁକଥା ପ୍ରଭାବିତ କରନ୍ତି—ବିଜ୍ଞାନ ପରି ସେମାନେ ମଧ ମହତ୍ତ୍ୱପୂର୍ଣ୍ଣ । ଗୋଟିଏ ଭାଷାକୁ ଆଦର୍ଶ କରି ଅନ୍ୟାନ୍ୟ ସବୁ ଭାଷାକୁ ସେହି ଭାଷାରେ ରୂପାନ୍ତରିତ କରିବା ଉଚିତ ନୁହେଁ । ତାର୍କିକ ପ୍ରତ୍ୟକ୍ଷବାଦ ଦର୍ଶନ କିନ୍ତୁ ସେଥିା କରୁଥିଲି । ପରେ ଏହି ଦର୍ଶନକୁ ନିଜେ ଉଇଟ୍‌ଗେନ୍‌ଷ୍ଟାଇନ୍ କଠୋର ସମାଲୋଚନା କରିଥିଲେ । ତାଙ୍କର ପରବର୍ତ୍ତୀ ଦର୍ଶନ ହିଁ ବିଶ୍ୱାସ ଓ ବିଜ୍ଞାନ ମଧ୍ୟରେ ସମନ୍ୱୟ ଆଣିବାକୁ ସକ୍ଷମ ହୋଇଥିଲି ।



# ଲେଖା ଓ ଲେଖକ

ପ୍ରଫେସର ଗାଉଜ୍ ଆନାଲିଟିକ୍ ଫିଲୋସଫି କ୍ଲାସ ନେଉଥାନ୍ତି । ମୁଁ ଆଗ ବେଞ୍ଚରେ ବସି ଶୁଣୁଥାଏ । ହ୍ୟୁମ୍ ପେପରର୍ ଅଧ୍ୟାପକ, ପ୍ରଫେସର ବଟଲର୍ ବାହାର ବାରଣ୍ଡାରେ ଥାଇ ମୋତେ ଡାକିଲେ । ଜଣେ ପ୍ରଫେସର୍ ଏତେ ଆଗ୍ରହକତାର ସହ କାହିଁକି ଡାକ ପାରେ ବୁଝି ନ ପାରି ମୁଁ ଗାଉଜ୍ଙ୍କର ଅନୁମତି ନେଇ ବାହାରକୁ ଆସିଲି । ବାରଣ୍ଡାରେ ବଟ୍‌ଲର୍ ଅପରାଧୀ ପରି କାନ୍ଥକୁ ଆଉଜି ଠିଆ ହୋଇଥାଆନ୍ତି । ମୋତେ ଆଗରୁ କହିପାରି ନ ଥିବାରୁ କ୍ଷମା ମାଗି ସେଦିନ ସନ୍ଧ୍ୟାରେ ତାଙ୍କ ଘରକୁ ଖାଇବାକୁ ଯିବାକୁ ସେ ନିମନ୍ତ୍ରଣ ଦେଲେ । କହିଲେ, ଅଷ୍ଟ୍ରେଲିଆରୁ ଆସିଥିବା ଗ୍ରୁଟ ଫାଦର୍ ମାକନା ଓ ଆଉ ଦୁଇଜଣ ଗ୍ରୁଟ ଓ ପ୍ରଫେସର୍ ଡେଭିଡ୍ ସାଇନ୍ ଓ ତାଙ୍କ ସହଧର୍ମିଣୀଙ୍କୁ ମଧ୍ୟ ସେଦିନ ଡିନରରେ ଯୋଗ ଦେବାପାଇଁ ସେ ଅନୁରୋଧ କରିଛନ୍ତି । ସେମାନେ ସମସ୍ତେ ଖୁବ୍ ଭଲଲୋକ, ସେମାନଙ୍କ ସଙ୍ଗେ କିଛି ସମୟ କଟାଇବାକୁ ସ୍ୱୀକୃତ ଦେବାକୁ ମୁଁ ଅରାଜି ହେବ ନାହିଁ । ଅଧ୍ୟାପକଙ୍କ ବିନୟ ଦେଖି, ମୁଁ ଆଶ୍ଚର୍ଯ୍ୟ ହେଲି ଓ ତାଙ୍କ ଘରକୁ ନିଶ୍ଚୟ ଯିବ ବୋଲି କହିଲି । ୧୯୬୩ ର ନଭେମ୍ବର ମାସ ।

ଆମର ମେଜର ଷ୍ଟ୍ରୀଟ୍ ଘରଠୁ ଅଳ୍ପ ଦୂରରେ ବଟ୍‌ଲର୍ଙ୍କ ଘର, ସେଣ୍ଟ୍ ଜର୍ଜ ଷ୍ଟ୍ରୀଟ୍ ଦେଇ ଗଲେ, ପନ୍ଦର କୋଡ଼ିଏ ମିନଟ୍‌ର ବାଟ । ସେଇଟି ସହରର ସମ୍ଭ୍ରାନ୍ତ ଅଞ୍ଚଳ ବୋଲି ସେହି ରାସ୍ତାର ଘରଗୁଡ଼ିକର ଆକାର ପ୍ରକାର, ପରିଷ୍କାର ପରିଚ୍ଛନ୍ନତା, ସାଜସଜ୍ଜା—ସବୁ ସୂଚାଇ ଦେଉଥାଏ । ବଟ୍‌ଲର୍ ଅବିବାହିତ, ନିଉଜିଲାଣ୍ଡର ଲୋକ, କାନାଡ଼ାର ଟରଣ୍ଟୋ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ । ଦେଖିବାକୁ ଅବିକଳ ବର୍ଟ୍ରାଣ୍ଡ୍ ରସେଲ୍ଙ୍କ ପରି । ଆଶ୍ଚର୍ଯ୍ୟ ଧରଣର ସାଦୃଶ୍ୟ । ଗ୍ରୁଟଗ୍ରୁଟୀମାନେ କାର୍‌ରେ ଯିବା ଆସିବା କରିବାବେଳେ ଇଉନିଭରସିଟିକୁ ସେ ଯାଆନ୍ତି ନାଲିଆ ସାଇକେଲଟିରେ । କ୍ଲାସ୍‌ରେ, କଲେଜରେ ଟିକିଏ ଗମ୍ଭୀର । ଆମକୁ ସେ ଡେଭିଡ଼୍ ହ୍ୟୁମ୍ଙ୍କ "ଟ୍ରିଟାଇଜ୍" ପଢ଼ାଉଥାନ୍ତି ।

ଟରଣ୍ଟୋର ଶୀତ ସେହିବର୍ଷ ମୁଁ ପ୍ରଥମ କରି ଅନୁଭବ କରୁଥାଏ । ବାଟରେ ଏପଟ ସେପଟ ବୁଲି ଠିକ୍ ସମୟରେ ତାଙ୍କ ଘରେ ପହଞ୍ଚି, ମୁଁ କଲିଂବେଲ୍ ଚିପିଲି ।

ସେତେବେଳକୁ କିନ୍ତୁ ଅନ୍ୟମାନେ ଆସି ସାରିଥାଆନ୍ତି—ଦୁଆର ଫିଟିବା ମାତ୍ରେ ସେମାନଙ୍କର କଥା, ଖାଦ୍ୟପଦାର୍ଥର ସୁଗନ୍ଧ ଓ ଉଷ୍ଣ ହାଓ୍ୱା ମୋତେ ସଙ୍ଗୋଳି ପକାଇଲା । ସେତେବେଳକୁ ସାମ୍ପେନ୍ ପିଆ ଚାଲିଥାଏ । ଓଭରକୋଟ୍ ରଖିସାରି ମୁଁ ଚେୟାରରେ ବସି ନ ଥିବ, ମୋତେ ସାମ୍ପେନ୍ ଯଚ୍ଛ ହେଲା । କାନାଡ଼ାରେ ପହଞ୍ଚିବାର ଅଳ୍ପ କେତେ ଦିନ ପରେ ବଟ୍ଲରଙ୍କ ଘରକୁ ସେହି ନିମନ୍ତ୍ରଣ—ମଦ୍ୟପାନ ପ୍ରତି ପରମ୍ପରାଗତ ତୀବ୍ର ବିଦ୍ୱେଷ ଓ ଭୟ ମୋର ଥାଏ । ବଟ୍ଲର୍ ସାହେବ ମୁଁ ମଦ୍ୟପାନ କରେନାହିଁ ଜାଣି, ମୋତେ କମଳାରସ ପିଇବାକୁ ଦେଲେ । ପିଉ ପିଉ ସମସ୍ତେ ଡିନର ଟେବୁଲ ପାଖକୁ ଗଲୁ । ଖିଆପିଆ ଆରମ୍ଭ ହେଲା । ସେମାନେ ସାମ୍ପେନ୍ ପିଉଥାନ୍ତି, ଡିନର୍ ବି ଚାଲିଥାଏ । ସେମାନଙ୍କ ମତରେ ସାମ୍ପେନ୍ କ୍ଷୁଧାବର୍ଦ୍ଧକ । ହବାଲି ଭାରତରେ ତ ଲୋକଙ୍କପାଇଁ ଖାଇବାକୁ ନାହିଁ, ଲୋକଙ୍କର କ୍ଷୁଧା ବର୍ଦ୍ଧନ କରିବାର କ'ଣ ପ୍ରୟୋଜନ ? ସେଇଥିପାଇଁ ବୋଧେ ମଦ୍ୟପାନକୁ ଭାରତରେ ମନା କରାଯାଇଛି । ବହୁ ବିଷୟରେ କଥା ପଡ଼ିଲା । ମଦ୍ୟ କାହିଁକି ପିଇବା ଉଚିତ ନୁହେଁଠୁ ଆରମ୍ଭ କରି ଭାରତୀୟ ଓ ସିଂହଳ ବିଶ୍ୱବିଦ୍ୟାଳୟଗୁଡ଼ିକରେ, ଦର୍ଶନରେ କ'ଣ ପଢ଼ାଯାଏ ଓ ପ୍ରଫେସର୍ ସାଭେନଙ୍କ ସାନଝିଅ ତା'ର ଇଟାଲିୟାନ୍ ସାଙ୍ଗମାନଙ୍କ ଯୋଗୁଁ ନିଜର ଇଂରାଜୀ ଉଚ୍ଚାରଣ କିପରି ଖରାପ କରିସାରିଲାଣି, ଇତ୍ୟାଦି ବ୍ୟକ୍ତିଗତ ବିଷୟ ପର୍ଯ୍ୟନ୍ତ । ସେହିପରି ସମସ୍ତରେ କଥା ପ୍ରସଙ୍ଗରେ ନୋବେଲ୍ ପ୍ରାଇଜ୍ କଥା ମଧ୍ୟ ଉଠିଲା । ବୋଧେ ଇଉନିଭର୍ସିଟି ଥିଏଟରରେ ସେତେବେଳେ ଡକ୍ଟର ଜିଭାଗୋ ଫିଲ୍ମ ପଡ଼ିଥାଏ; ସେହି ଫିଲ୍ମରୁ କଥା ଗଡ଼ିଲା ନୋବେଲ ପ୍ରାଇଜ୍ ଆଡ଼କୁ । ମୁଁ କହିଲି, ନୋବେଲ୍ ପ୍ରାଇଜ୍‌କୁ ବିଶ୍ୱର ସର୍ବଶ୍ରେଷ୍ଠ ସାହିତ୍ୟିକ ଆଓ୍ୱାର୍ଡ଼ ରୂପେ ନେବା ଉଚିତ ନୁହେଁ । ୟୁରୋପ ଓ ଆମେରିକାର ସାଧାରଣ ଲେଖକ ଏହି ପ୍ରାଇଜ୍‌କୁ ପାଉଥିବା ବେଳେ, ଏସିଆରେ, ବିଶେଷ କରି ଭାରତରେ, ବହୁ ଯୋଗ୍ୟ ସାହିତ୍ୟିକ ଏହି ପ୍ରାଇଜ୍ ପାଇ ପାରି ନାହାନ୍ତି । ସେମାନେ ମୋର ମତାମତ ଶୁଣି କିଛିଟା ଆଶ୍ଚର୍ଯ୍ୟ ଓ କ୍ଷୁବ୍ଧ ହେବା ପରି ଜଣାଗଲା; କିନ୍ତୁ ସେହିଦିନ କଥାବାର୍ତ୍ତାରୁ ମୋର ଅଧ୍ୟାପକମାନେ ଓ ବନ୍ଧୁମାନେ ମୁଁ ଜଣେ ଲେଖକ ବୋଲି ଜାଣିଲେ । ମୁଁ ରିସର୍ଚ୍ଚ କରିବାକୁ ଆସିବା ପୂର୍ବରୁ ଯେ ତିନିଖଣ୍ଡ ଉପନ୍ୟାସ, ଦୁଇଖଣ୍ଡ କ୍ଷୁଦ୍ରଗଳ୍ପ ବହି ଓ ଗୋଟିଏ ପ୍ରବନ୍ଧ ବହି ଲେଖିସାରିଛି, ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେହି ଦିନଠାରୁ ମୋ ପ୍ରତି ସେମାନଙ୍କର ମନୋଭାବ ବଦଳି ଯାଇଥିଲା ।

ଏ ଘଟଣାର କିଛିଦିନ ପରେ, ଦିନେ ପ୍ରଫେସର୍ ବଟ୍ଲର କଲେଜରେ ତାଙ୍କ ରୁମ୍‌ରେ ହଠାତ୍ ଉପରେ ପଡ଼ି ମୋତେ ତାଙ୍କ ଜୀବନୀ କହିବାକୁ ଲାଗିଲେ । କିପରି ପିଲାଦିନେ ସେ ଜଣେ ଲେଖକ ହେବାକୁ ଇଚ୍ଛା କରିଥିଲେ, କିଛି ଲେଖାଲେଖି

କରିଥାଲେ ବି; କିନ୍ତୁ ପରେ ଦର୍ଶନ ଆଡ଼କୁ ଆକୃଷ୍ଟ ହୋଇ ଦର୍ଶନ ପଢ଼ିଲେ ଓ ଶେଷରେ ଅଧ୍ୟାପକ ହେଲେ, ଇତ୍ୟାଦି, ଇତ୍ୟାଦି । ଶେଷରେ ବର୍ଟ୍ରାଣ୍ଡ ଦର୍ଶନ ଓ ସାହିତ୍ୟ ଉଭୟ ମଧ୍ୟରେ ଏକ ବାଲାନ୍ସ ଆଣି ଜୀବନଯାପନ କରିବାକୁ ମୋତେ ଉପଦେଶ ଦେଲେ । ତାଙ୍କ ମତରେ, ଖାଲି ସାହିତ୍ୟରେ ମାତିଲେ ଲୋକ ଭାବପ୍ରବଣ ହୋଇଯିବ ଓ ସଂସାରରେ ଭାବପ୍ରବଣ ଲୋକଙ୍କ ବେଶି ଦୁଃଖ ପାଆନ୍ତି । ଏକ ପୂର୍ଣ୍ଣାଙ୍ଗ ମଣିଷ ହେବାପାଇଁ ସାହିତ୍ୟ ଓ ଦର୍ଶନ ଉଭୟର ପ୍ରୟୋଜନୀୟତା ରହିଛି । ସେ ଏହି ସବୁ କଥା କହୁଥିବା ବେଳେ ମୋତେ ତାଙ୍କର ନାଲି ସାଇକେଲଟି ମନେ ପଡ଼ୁଥିଲା ଓ କେହି ଜଣେ କହିଥିବା ପରି ମନେ ପଡ଼ୁଥିଲା ଯେ ବର୍ଟ୍ରାଣ୍ଡ ନିଜର ବିଧବା ମା'ଙ୍କ ସେବାପାଇଁ ହିଁ ବିବାହ କଲେ ନାହିଁ । ଏ କଥା କରିବାପାଇଁ ସାହିତ୍ୟିକ ଆବେଗ ନା ଦାର୍ଶନିକ ବୁଦ୍ଧି କେଉଁଟା ତାଙ୍କୁ ଉତ୍ସାହ ଦେଇଥିଲା ? ପ୍ରଶ୍ନଟା କିନ୍ତୁ ମୁଁ ତାଙ୍କୁ ପଚାରି ନ ଥିଲି ।

ଆଉ ଦିନେ ପ୍ରଫେସର୍ ସାଭେଜ୍ ମୁରୁକେଇ ହସି ମୋତେ କହିଲେ—ଜାଣିଲଣି, କ୍ୱାଇନ୍ ଗୋଟିଏ ଉପନ୍ୟାସ ଲେଖିଛନ୍ତି ! ମୁଁ ତାଙ୍କର କଥାଟିକୁ ବିଶ୍ୱାସ କରି ପାରିଲିନି । କ୍ୱାଇନ୍ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର ଗାଣିତିକ, ତର୍କଶାସ୍ତ୍ରର ବିଶ୍ୱବିଖ୍ୟାତ ଅଧ୍ୟାପକ । ତାଙ୍କୁ ଶୁଷ୍କ ନୀରସ ଲୋକ ବୋଲି ଲୋକେ ଭାବିବା ସ୍ୱାଭାବିକ । ସେହିପରି କିଛିଟା ସେ ଦିଶନ୍ତି ବି । ପ୍ରଫେସର୍ ସାଭେଜ୍‌ଙ୍କୁ ହାର୍ଭାର୍ଡ଼୍‌ରେ ସେ ଲଜିକ୍ ପଢ଼ାଉଥିଲେ । ସେ ଉପନ୍ୟାସ ଲେଖିଥିବା ଶୁଣି ମୁଁ ଖୁସି ହେଲି । ଦାର୍ଶନିକମାନଙ୍କର ସାହିତ୍ୟ ପ୍ରତି ଅନୁରାଗର ବହୁ ଉଦାହରଣ ରହିଛି; କିନ୍ତୁ କ୍ୱାଇନ୍‌ଙ୍କ ଉଦାହରଣ ସେଦିନ ବେଶୀ ଟିକିଏ ଉତ୍କଟ ପରି ଜଣାପଡ଼ିଲା । ଗାଣିତିକ ତର୍କଶାସ୍ତ୍ରରୁ ଉପନ୍ୟାସ—ଟିକିଏ ଯେପରି ବେଶି ଲମ୍ବା ପାଦ କ୍ୱାଇନ୍‌ଙ୍କୁ ପକାଇ-ଥିବାକୁ ପଡ଼ିଥିବା ପରି ମନେ ହେଲା ।

ସେହିପରି ଆଉ ଦିନେ । ସେତେବେଳକୁ ମୋର ରିସର୍ଚ୍ଚ ଟପିକ୍ ଆହୁରି ଠିକ୍ ହୋଇ ନ ଥାଏ । ସାଭେଜ୍ ମୋତେ ଡାକି କହିଲେ—ମିଷ୍ଟର ମିଶ୍ର ! ତୁମେ ସାନ୍ତାୟନଙ୍କ ଉପରେ ରିସର୍ଚ୍ଚ କର, ଭଲ ହେବ; କାରଣ ସାନ୍ତାୟନଙ୍କ ଲେଖା ସାହିତ୍ୟ ଦୃଷ୍ଟିରୁ ଖୁବ୍ ଉଚ୍ଚକୋଟୀର୍ଣ୍ଣ । ତାଙ୍କୁ ଜଣେ ଦାର୍ଶନିକ ଛଡ଼ା, ଜଣେ ସାହିତ୍ୟିକ ରୂପେ ମଧ୍ୟ ନିଆଯାଇ ପାରିବ; କିନ୍ତୁ ମୁଁ ସେଦିନ ଏଣୁ ତେଣୁ କଥା କହି ତାଙ୍କୁ ଭୁଲାଇ ଦେଇଥିଲି । ମୁଁ ଜଣେ ଲେଖକ ବୋଲି ଜାଣିବାରୁ ଡିପାର୍ଟମେଣ୍ଟ୍‌ରେ ଏତେଦୂର ପ୍ରତିକ୍ରିୟା ହୋଇଛି ଦେଖି, ମୁଁ ଟିକିଏ ଡରି ବି ଗଲି । ମୋତେ ଲାଗିଲା, ଯେପରି ମୋର ସାହିତ୍ୟିକ ଦିଗଟାକୁ ଜୋର୍ ଦେଇ ଦାର୍ଶନିକ ଦିଗଟାକୁ, ମୋର

ଅଧ୍ୟାପକମାନେ ଅବହେଳା କରିବାରେ ଲଗିଛନ୍ତି । ତେଣୁ ମୁଁ ସଙ୍କଳ୍ପ କଲି ଶୁଦ୍ଧ ଦାର୍ଶନିକ ଟପିକ୍ ଉପରେ ରିସର୍ଚ୍ଚ କରି ପି: ଏଚ୍: ଡ଼ି: ଡିଗ୍ରୀ ପାଇବି, ନ ହେଲେ ଆଦୌ ନୁହେଁ ।

କମନଓ୍ୱେଲ୍ଥ ସ୍କଲାରସିପ୍ ଇଣ୍ଟରଭ୍ୟୁ ପାଇଁ ମୁଁ ଦିଲ୍ଲୀ ଯାଇଥିବା ବେଳେ, କାନାଡ଼ିଆନ୍ କନ୍‌ସୁଲେଟ୍ ଫରୁ ଆସିଥିବା ଜଣେ ଯୁବକ ମୋତେ ପଚାରିଥିଲେ— କାନାଡ଼ା ଗଲେ ଅବସର ସମୟରେ ତୁମେ କଣ କରିବ ? ମୁଁ ମୋର ଦର୍ଶନ ଛଡ଼ା ସାହିତ୍ୟରେ ଆଗ୍ରହ ଥିବା କଥା ତାଙ୍କୁ କହିଥିଲି । ଆଉ କହିଥିଲି, ମୁଁ କିପରି ନିଜେ ଜଣେ ଲେଖକ । ଅବସର ପାଇଲେ କାନାଡ଼ାର ଲେଖକ ଲେଖିକାମାନଙ୍କ ସହ କଥାବାର୍ତ୍ତା କରିବା, ମତ ବିନିମୟ କରିବା, ସେମାନଙ୍କର ଜୀବନର ଆଦର୍ଶ କଣ ବୁଝିବା, ଇତ୍ୟାଦି କାମ କରିବି ବୋଲି କହିଥିଲି । ବୋଧେ ମୋର ଉତ୍ତର ତାଙ୍କୁ କିଛିଟା ପ୍ରଭାବିତ କରିଥିବ; କିନ୍ତୁ ସେଦିନ ମୁଁ ଭୁଲ୍ କହିଥିଲି । ଟରେଣ୍ଟୋ ଯାଇ ରିସର୍ଚ୍ଚ କାର୍ଯ୍ୟରେ, ବିଶେଷ କରି ଶୁଦ୍ଧ ଦାର୍ଶନିକ ବିଷୟ ନେଇ ରିସର୍ଚ୍ଚ କରିବି - ନାମ କରିବି—ବୋଲି ପଣକଲା ପରେ ଗଳ୍ପ ଉପନ୍ୟାସ ଲେଖିବା ମୋର ବନ୍ଦ ହୋଇଗଲା । ଏପରିକି ଗଳ୍ପ ଉପନ୍ୟାସ ପଢ଼ିବା ମଧ୍ୟ ବନ୍ଦ ହୋଇଗଲା । ଏ ତ୍ୟାଗ କରିବାକୁ ସଙ୍କଳ୍ପ କରିବାବେଳେ ଯେଉଁ ମନସ୍ତାପ ହୋଇଛି, ତାହା ମୁଁ ବର୍ଣ୍ଣନା କରିପାରିବି ନାହିଁ । କାନାଡ଼ାରେ ପ୍ରଥମେ ପହଞ୍ଚି ରିସର୍ଚ୍ଚ ଓ ଗଳ୍ପ ଉପନ୍ୟାସ ଲେଖାଲେଖିର ସମନ୍ୱୟ କରିପାରିବି ବୋଲି ଭାବିଥିଲି । "ନାଏଗ୍ରା ଓ ଦେବଯାନୀ', "ବିସ୍ମୃତ ବିଜୟୀ", ଗୁଡ଼ାଏ ରଙ୍ଗ, ଗୁଡ଼ାଏ ରେଖା" ଏହି ତିନୋଟି ଗଳ୍ପ ଓ ଆର୍ଥର କୋଏସଲରଙ୍କ "ଦି ଲୋଟସ୍ ଏଣ୍ଡ୍ ଦି ରୋବଟ୍" ବହି ଉପରେ ଏକ ଆଲୋଚନା ଲେଖି ଓଡ଼ିଶା ପଠାଇଥିଲି । ସେତିକି, ତା'ପରେ ଧିରେ ଧିରେ ରିସର୍ଚ୍ଚରେ ବ୍ୟସ୍ତ ରହିବା ପରେ ସବୁ ବନ୍ଦ ହୋଇ ଯାଇଥିଲା । କେବଳ ଭବିଷ୍ୟତରେ ଲେଖାଲେଖି ପାଇଁ ପର୍ଯ୍ୟାପ୍ତ ନୋଟ୍‌ସ ନେଉଥାଏ ଓ କାନାଡ଼ିଆନ୍ ସାହିତ୍ୟ ନେଇ ଆଲୋଚନା ମୂଳକ ଲେଖା ପଢ଼ୁଥାଏ । ସାହିତ୍ୟ ସଙ୍ଗେ ନାମକୁ ମାତ୍ର ସମ୍ପର୍କ ରଖି ପାରିଥିଲି ।

କ୍ରମଶଃ ମୋତେ ଯେପରି ଜଣା ପଡ଼ିଲା, କାନାଡ଼ାରେ ଆଖିଦୃଶିଆ ହୋଇ କିଛି ସାହିତ୍ୟ ନାହିଁ । ମୋର ଏ ଆବିଷ୍କାର କିନ୍ତୁ ନୂତନ ନୁହେଁ, କାରଣ ସେଠାକାର ଲୋକଙ୍କଠୁ ମଧ୍ୟ ମୁଁ ଏହି ମତ ମଧ୍ୟ ଶୁଣିବାକୁ ପାଇଲି । ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଥାଏ । ଏଡ଼େ ସମୃଦ୍ଧ ଦେଶ, ପ୍ରାକୃତିକ ସୌନ୍ଦର୍ଯ୍ୟର ସୀମା ନାହିଁ, ପୃଥିବୀର ବିଭିନ୍ନ ଅଞ୍ଚଳରୁ ଲୋକେ ଆସି ଏଇଠି ରହିଛନ୍ତି—କିନ୍ତୁ ଏସବୁ ସତ୍ତ୍ୱେ ସମୃଦ୍ଧ ସାହିତ୍ୟ ଏଠି କାହିଁକି ନାହିଁ ? ଭଲ ବହି ପାଇଁ ଗଭର୍ଣ୍ଣର ଜେନେରାଲଙ୍କ ବାର୍ଷିକ ପ୍ରାଇଜ୍ ଅଛି । କାନାଡ଼ା କାଉନ୍‌ସିଲ ମେଡ଼ାଲ ଓ ଟଙ୍କା ଦେଇ ଲେଖକଙ୍କୁ ଉତ୍ସାହିତ କରୁଛି ।

ଗୁଡ଼ିଏ ବିଶିଷ୍ଟ ପ୍ରକାଶନ ସଂସ୍ଥା ବି ଅଛି (ରାଇରସନ୍, ମାକ୍‌କ୍ଲେନଲାଣ୍ଡ, ଷ୍ଟିଓ୍ୱାର୍ଟ ଓ ମ୍ୟାକ୍‌ମିଲନ୍ ); କିନ୍ତୁ କାହାନ୍ତି କାନାଡ଼ାର ହେମିଙ୍ଗ୍‌ଓ୍ୱେ, ଫକ୍‌ନର୍ କି ଉଲଫ୍ ? ପଚାରିଲେ, କାନାଡ଼ିଆନ ବନ୍ଧୁମାନେ ଦାନ୍ତ ଚିପି, ନାଲି ଆଖି କରି ଦକ୍ଷିଣ ଆଡ଼କୁ ନିର୍ଦ୍ଦେଶ କରନ୍ତି—ଅର୍ଥାତ୍ ଆମେରିକାର ଛାଇରେ କାନାଡ଼ାରେ ଘାସ ବି କଅଁଳୁ ନାହିଁ ! ବହି ଦୋକାନକୁ ଯାଇ ଦେଖ, ଅମେରିକାନ୍ ଲେଖକମାନଙ୍କ ବହିରେ ଆଲମିରା ଭର୍ତ୍ତି । ଲୋକଙ୍କ ସହି କଥାବାର୍ତ୍ତା କର, ସେମାନେ ଆମେରିକାରେ ପ୍ରକାଶିତ କି ଇଂଲଣ୍ଡରେ ପ୍ରକାଶିତ ବହି ଉପରେ କଥାବାର୍ତ୍ତା କରିବେ । କଲେଜରେ ସ୍କୁଲରେ ପାଠ୍ୟପୁସ୍ତକ ବି ସବୁ ସେଇ ବହି । ଏପରି ଅବସ୍ଥାରେ କାନାଡ଼ାରେ ତୁମେ ସାହିତ୍ୟର ଅଭିବୃଦ୍ଧି କିପରି ଆଶା କରୁଛ ? କାନାଡ଼ିଆନ ଲେଖକମାନେ ଏପରି ପରିସ୍ଥିତିରେ କିପରି ଉତ୍ସାହିତ ହେବେ ?—ସେମାନେ ମୋତେ କହନ୍ତି । ମୋତେ କିନ୍ତୁ ସେମାନଙ୍କର ଏ ଉତ୍ତର ସନ୍ତୋଷ ଦେଇ ପାରେନି । କେତେଟା ଉତ୍ତର ତ ମୋତେ ଓଡ଼ିଶାରେ, ଓଡ଼ିଆ ସାହିତ୍ୟ ନେଇ ଚର୍ଚ୍ଚା ଚାଲିଥିବା ବେଳେ, ଶୁଣିଥିବା ପରି ମନେ ହୁଏ । ତଫାତ୍ ଏତିକି ଯେ ଓଡ଼ିଶାରେ ଭଲ ସାହିତ୍ୟ ଥାଇ ପ୍ରଚାର ଅଭାବରୁ କିଛି ନ ଥିବା ପରି ଜଣାପଡ଼ୁଛି । କାନାଡ଼ାର ପ୍ରଚାର ପାଇଁ ଖୁବ୍ ସମ୍ବଳ ଅଛି; କିନ୍ତୁ ପ୍ରଚାର କରାଯିବା ପାଇଁ କିଛି ବିଷୟ ନାହିଁ । ଉଲ୍ଲେଖଯୋଗ୍ୟ ବହି ଯେ ନାହିଁ ତା' ନୁହେଁ, କାନାଡ଼ାର ମନ୍ତ୍ରୀମାନଙ୍କୁ ନେଇ (ପିଟର୍ ନିଉମାନଙ୍କର "ଜନ୍ ଡିଫେନ୍‌ବେକର୍") ଜେ. ଏମ୍. ଏସ୍. କେଏରଲେସ୍‌ଙ୍କ "ଜର୍ଜ ବ୍ରାଉନ୍"), କାନାଡ଼ାର ଲୋକେ ପ୍ରଥମେ ପ୍ରଥମେ କି ଧରଣର ଫର୍ଣ୍ଣିଚର୍ ବ୍ୟବହାର କରୁଥିଲେ, କାନାଡ଼ାର କେଉଁ ରେଜିମେଣ୍ଟ୍ ବୁଏର ଯୁଦ୍ଧରେ ଭାଗ ନେଇଥିଲା, ଇତ୍ୟାଦି, କଥା ନେଇ ବହି ସବୁ ଲେଖା ଯାଇଛି । ଯେ କୌଣସି ସମ୍ଭ୍ରାନ୍ତ କାନାଡ଼ିଅନ୍ ପରିବାରକୁ ଯାଅ, ଏହି ସବୁ ବହି ଟେବୁଲ ଉପରେ ଥୁଆ ହୋଇଥିବା ଦେଖିବ; କିନ୍ତୁ ଯାହାକୁ ସୃଜନଶୀଳ ସାହିତ୍ୟ ବୋଲି କୁହାଯାଏ—ଉପନ୍ୟାସ, ଗଳ୍ପ, କବିତା—ସେ ସବୁଥିରେ କାନାଡ଼ିଅନ୍ ସାହିତ୍ୟ ଦୁର୍ବଳ—ଏପରିକି ବାହାର ଲୋକଙ୍କୁ ଠକିବାପାଇଁ ମଧ୍ୟ କିଛି ଲେଖା ନାହିଁ । କେତେକ କହନ୍ତି, କାନାଡ଼ାର ଟିଭି ତାର ସୃଜନଶୀଳ ସାହିତ୍ୟକୁ ମାରି ଦେଇଛି; କିନ୍ତୁ ଏକଥା ସତ ହୋଇଥିଲେ ଆମେରିକାର ସାହିତ୍ୟ ବି ବଡ଼ ହୋଇପାରି ନ ଥାନ୍ତା ଇଂଲଣ୍ଡ, ଫ୍ରାନ୍‌ସ ଓ ଇଉରୋପର ଅନ୍ୟାନ୍ୟ ଦେଶରେ ସାହିତ୍ୟ ବି ମରିଯାଇଥାନ୍ତା; କିନ୍ତୁ କାନାଡ଼ାରେ ହିଁ ଏ ଦୁର୍ଘଟଣାଟି ଘଟିଲା କିପରି ?

କୌଣସି ଗୋଟିଏ କାରଣ ନୁହେଁ, ବହୁତ କାରଣ କାନାଡ଼ାର ସାହିତ୍ୟର ଅନଗ୍ରସରତା ମୂଳରେ ରହିଛି ବୋଲି କୁହାଯିବ । ସବୁଠୁଁ ବଡ଼ କଥା ହେଲା; କାନାଡ଼ାର ଲୋକସଂଖ୍ୟା ଜମାରୁ ୧୯୦୦୦୦୦୦, ଓଡ଼ିଶାର ଲୋକସଂଖ୍ୟା ସହିତ ପ୍ରାୟ



ସମାନ । ସେଥିରୁ ୬୦୦୦୦୦୦ ଇଂରେଜୀ ଭାଷା ନ ଜାଣିଥିବା ଲୋକ । ବାକି ୧୩୦୦୦୦୦୦୦ଙ୍କ ମଧ୍ୟରୁ ଇଂରାଜୀ ବହି ପଢ଼ି, ବୁଝି ଆଗ୍ରହୀ ହେବା ଲୋକଙ୍କ ସଂଖ୍ୟା ୬୦୦୦୦୦୦ରୁ ହେବେ । ଆମେରିକାରୁ ସବୁ ସଂସ୍କୃତିର ଖେଚେଡ଼ି ହାଣ୍ଡି ବୋଲି କୁହାଯାଏ । ଜୋଏନ୍ ଗାର୍ଡନର ବୋଲି ଟରୋଣ୍ଟୋର ଜଣେ ତରୁଣୀ ଯେ ମୋତେ ପ୍ରଥମ ଦିନ ଏୟାର ପୋର୍ଟର ଭଡ଼ାଘର ପାଇଁ ନେଇ ଯାଇଥିଲେ, ଗର୍ବ କରି କହୁଥିଲେ, କାନାଡ଼ା ଖେଚେଡ଼ି ହାଣ୍ଡି ନୁହଁ, ଏଠି ସବୁ ସଂସ୍କୃତି ନିଜ ନିଜର ସ୍ୱତନ୍ତ୍ର ସତ୍ତା ବଜାୟ ରଖି ରହିପାରିବେ । ଆମେରିକାରେ ସେକଥା ନାହିଁ, ବାହାର ଲୋକେ ସେଠି ସ୍ୱତନ୍ତ୍ର ସତ୍ତାକୁ ହରାଇ ଦିଅନ୍ତି । ମୁଁ କିନ୍ତୁ ଗାର୍ଡନରଙ୍କ ଯୁକ୍ତି ପଛରେ କାନାଡ଼ାର କ୍ୟୁବେକ୍‌ବାସୀ ଫରାସୀ ଲୋକଙ୍କ କେନ୍ଦ୍ରକରି ରହିଥିବା ହୀନମନ୍ୟତାକୁ ବେଶ୍ ବାରି ପାରିଲି । ଜୀବନ୍ତ ଓ ବର୍ଦ୍ଧିଷ୍ଣୁ ଲୋକ ସବୁ ପ୍ରକାର ଜିନିଷ ଟାଣି ନିଜର ପୁଷ୍ଟି ସାଧନ କରେ, ଯଦି ସବୁ ଜିନିଷ ଶରୀର ଭିତରେ ମିଶି ନ ଯାଇ, ନିଜର ସ୍ୱତନ୍ତ୍ର ସତ୍ତା ଜାହିର୍ ରଖିବେ, ତାହାହେଲେ ସେହି ଶରୀରକୁ ମୃତ ବୋଲିକି କୁହା ଯିବା ଉଚିତ । ଅବଶ୍ୟ ସତରେ ଆମେରିକା ମେଲଟିଂ ପଟ୍ ହୋଇଥିଲେ, କଳା ଗୋରା ସମସ୍ୟାଇ ସେଠି ନ ଥାନ୍ତା । କଳା ପ୍ରତ୍ୟେକ ଗୋରା ସ୍ତ୍ରୀ ଲୋକ ସହ ସହବାସ କରୁଥିବା କଳ୍ପନାରେ ଗୋରା ଲୋକେ ଅସହିଷ୍ଣୁ ହୋଇଯାନ୍ତେ ନାହିଁ; କିନ୍ତୁ ଏହି ମେଲ୍‌ଟିଂ ପଟ୍‌କୁ ସତ୍ୟ କରି ଧରିଲେ, ଭାରତ ବର୍ଷ ହିଁ ଦିନେ ସବୁଠୁ ବଡ଼ ଖେଚେଡ଼ି ହାଣ୍ଡି ଥିଲା, ସବୁଠୁ ବେଶୀ ଜୀବନ୍ତ ଥିଲା । ଭାରତୀୟ ସଂସ୍କୃତିର ବାର୍ଦ୍ଧକ୍ୟ ବେଳେହିଁ ଭାରତକୁ ମୁସଲମାନମାନେ ଆସିଥିଲେ । ସେମାନେ ନିଜର ସ୍ୱତନ୍ତ୍ର-ସତ୍ତା ରଖିବା ଫଳରେ ଭାରତ ଯେଉଁ ଭୟାବହ ଫଳ ଭୋଗିଲା, ତାହା ସମସ୍ତେ ଜାଣନ୍ତି । ଧର୍ମ ହେଉ, ବିଜ୍ଞାନ ହେଉ ଯେ କୌଣସି ଦିଗରେ ଭାରତୀୟ ଆତ୍ମାର ପୁନରୁତ୍ଥାନ ଆରମ୍ଭ ହେଲେ, ସମସ୍ୟା କମ୍ ହେଲେ, ବହୁ ସମ୍ପ୍ରଦାୟର ସ୍ୱତନ୍ତ୍ର-ସତ୍ତା ଲୁଚିଯିବ, ବିଶାଳ ଜାହ୍ନବୀରେ ସବୁ ଧାରା ଉପଧାରା ମିଶିଯିବେ ।

କାନାଡ଼ାରେ ସବୁ ଲୋକ ଗୋଟିଏ ଭାଷା କହିଲେ ନିଶ୍ଚୟ ସେହି ଦେଶର ସାହିତ୍ୟରେ ଉନ୍ନତି ହୁଅନ୍ତା । ସାହିତ୍ୟ ଦୃଷ୍ଟିରୁ ଦେଶ ମେଲ୍‌ଟିଂ ପଟ୍ ହେଲେହିଁ ଭଲ । ଓଡ଼ିଶାର ଆଦିବାସୀ, ଓଡ଼ିଶାରେ ରହୁଥିବା ପଞ୍ଜାବୀ, ମାରୱାଡ଼ି, ଓଡ଼ିଆ ମୁସଲମାନମାନେ ଯେତେବେଳେ ଓଡ଼ିଆ ସାହିତ୍ୟରେ ଆଗ୍ରହୀ ହେବେ, ଓଡ଼ିଆରେ ଲେଖାଲେଖି କରିବେ, ସେତେବେଳେ ଓଡ଼ିଆ ଭାଷା ଓ ସାହିତ୍ୟ ଆହୁରି ସମୃଦ୍ଧ ହେବ, ଏଥିରେ ସନ୍ଦେହ ନାହିଁ । ମ୍ୟାକ୍‌ମିଲନ୍ କମ୍ପାନୀଙ୍କଦ୍ୱାରା ପ୍ରକାଶିତ ଜନ୍ ହେଲେଙ୍କ ସମ୍ପାଦିତ କାନାଡ଼ାରେ ଲେଖା ବହିରେ କାନାଡ଼ା ପାଠକ ହିଁ କାନାଡ଼ାରେ ଉନ୍ନତ ସାହିତ୍ୟ ସୃଷ୍ଟି କରିବାପାଇଁ ସକ୍ଷମ ବୋଲି ମତ ଦିଆ ଯାଇଛି । ବର୍ତ୍ତମାନ

କାନାଡ଼ାରେ କବିତା କି କ୍ଷୁଦ୍ରଗଳ୍ପର କାଟ୍ତି ନାହିଁ । ଇ. ଜେ. ପ୍ରାଟ୍ ଓ ଇର୍ଭିଂ ଲେଟନ୍‌ଙ୍କର କବିତା ବହି କିଛି କିଛି ସରେ । ତାହା କିନ୍ତୁ ସାହିତ୍ୟିକ ମୂଲ୍ୟଦୃଷ୍ଟିରୁ ଯେତେ ନୁହେଁ, 'ଚଳ, କାନାଡ଼ାର କବିଙ୍କୁ ଉତ୍ସାହିତ କରିବା' ମନୋବୃତ୍ତି ଯୋଗୁଁ ବେଶି; କିନ୍ତୁ ଭବିଷ୍ୟତରେ ମଧ୍ୟ ଏପରି ଅବସ୍ଥା ରହିଲେ, କାନାଡ଼ାରେ ବିଶିଷ୍ଟ ସାହିତ୍ୟିକ କେନ୍ଦ୍ର ନ ବାହାରିଲେ, ସେ ଦେଶ ଯେ ତା'ର ସ୍ୱତନ୍ତ୍ର ସତ୍ତା ବଜାୟ ରଖି ପାରିବ, ଏକଥା ନେଇ ଚିନ୍ତାଶୀଳ ଲୋକେ ସନ୍ଦେହ ପ୍ରକାଶ କଲେଣି । ସମୁଦ୍ର ସେପାରି ଫରାସୀ ସାହିତ୍ୟର କ୍ୱିବେକ୍ ଉପରେ ଯେପରି ପ୍ରଭାବ ପଡ଼ୁଛି, ସେହିପରି କାନାଡ଼ାର ବାକି ପ୍ରଦେଶଗୁଡ଼ିକ ଉପରେ ଆମେରିକା ସାହିତ୍ୟର ପ୍ରଭାବ ପଡ଼ୁଛି । ତେଣୁ କାନାଡ଼ା ଦିନେ ଦୁଇଭାଗ ହୋଇ ଯିବାର ସମ୍ଭାବନା ରହିଛି ।



# ଭାଷା ଓ ପ୍ରାଦେଶିକତା

ଟରଣ୍ଟୋର ୧୮୫ ମେଜର ଷ୍ଟ୍ରିଟ୍ । ସନ୍ଧ୍ୟା ଆଠଟା ପ୍ରାୟ ହେବ । ମୁଁ ପଢ଼ା ଟେବୁଲରେ ବସି ପ୍ଲେଟୋଙ୍କର "ଥିଆଟିଟସ୍" ଡାଏଲଗ୍‌ଟି ପଢ଼ୁଥାଏ । ସେଇଟି ସାରିଲେ "ସୋଫିଷ୍ଟ" ଡାଏଲଗ୍ ପଢ଼ିବାକୁ ହେବ । ଶ୍ରୀମତୀ ସିଦ୍ଧାର୍ଥକୁ ଇଂରାଜୀ ଶିଖାଇବାରେ ବ୍ୟସ୍ତ; ହଠାତ୍ ଟେଲିଫୋନ୍ ବାଜି ଉଠିଲା । ରୁମ୍ ଭିତରେ ହିଟିଂ ପାଇଁ ଉଦ୍ଦିଷ୍ଟ ଲମ୍ବା ତାର ଉପରେ ଥିବା କାଠର କଭରଟି ଉପରେ ଫୋନ୍‌ଟି ରଖା ଯାଇଥାଏ, ମୋର ପଢ଼ା ଟେବୁଲଠୁ ଅନତିଦୂରରେ । ମୁଁ ଉଠି ଫୋନ୍ ଧରିଲି । ସେପଟୁ ଇଂରାଜୀରେ ନିଜର ପରିଚୟ ଶ୍ୟାମ କୁମାର ବୋଲି ଦେଇ, କେହି ଜଣେ ହିନ୍ଦୀଭାଷୀ ଭଦ୍ରବ୍ୟକ୍ତି, ଆମ ଘରକୁ ବୁଲି ଆସିବାକୁ ଇଚ୍ଛା ପ୍ରକାଶ କଲେ । ମୋର ମନେପଡ଼ିଲା, ସେହି ଭଦ୍ର ବ୍ୟକ୍ତି ସାତ ଦିନ ତଳେ ଆମ ପାଖକୁ ଆସିବାକୁ ଇଚ୍ଛା କରି, ଆଉଥରେ ଫୋନ୍ କରିଥିଲେ, ସେଦିନ କିନ୍ତୁ ଆମେ କୌଣସି କାନାଡ଼ିଆନ ପରିବାରଙ୍କ ଘରକୁ ଯାଉଥିବାରୁ, ମୁଁ ତାଙ୍କୁ ସେଦିନ ଆସିବାକୁ ମନା କରି ଦେଇଥିଲି । କୌଣସି ଭାରତୀୟ ପରିବାରକୁ କାନାଡ଼ାରେ ଦେଖିଲେ, ଆମେ ରଙ୍କ ପରି ହେଉ—ସେ ହୋଇଥାଆନ୍ତୁ ବିହାରୀ, ତେଲୁଗୁ ବା ଅନ୍ୟ କୌଣସି ଭାଷାଭାଷୀ—ଅନ୍ୟ କୌଣସି ଅଞ୍ଚଳର । ମୁଁ ସଙ୍ଗେ ସଙ୍ଗେ ଶ୍ୟାମକୁମାରଙ୍କୁ ଆମ ଘରକୁ ଆସିବାକୁ କହିଲି । ଫୋନ୍ ଥୋଇ ଦେଇ ଶ୍ରୀମତୀଙ୍କୁ କହିଲି, ଭଦ୍ରଲୋକ ସସ୍ତ୍ରୀକ ଆମ ଘରକୁ ଅଧଘଣ୍ଟାଏ ଭିତରେ ଆସୁଛନ୍ତି । ପ୍ରଥମଥର ପାଇଁ ଆସୁଛନ୍ତି, ପ୍ରସ୍ତୁତ ହୋଇଯାଅ । ମୋଠୁ ବେଶି ଖୁସି ହେଲେ ଶ୍ରୀମତୀ—ଭାରତର ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ସୁଯୋଗ ମିଳିବ ଭାବି । ମୁଁ ଖୁସି—କିଛି ସମୟ ପାଇଁ ପ୍ଲେଟୋଙ୍କ "ଥିଆଟିଟସ୍"ରୁ ମୁକ୍ତି ମିଳିବ ବୋଲି ।

ସିଦ୍ଧାର୍ଥ ଖେଳୁଥାଏ, ସେମାନେ ଆସି ପହଞ୍ଚିଲେ । ଭଦ୍ରବ୍ୟକ୍ତି ସୁପୁଷ୍ଟ, କିଛିଟା ଗମ୍ଭୀର କଣ୍ଠରେ, ପୂର୍ଣ୍ଣଥରେ ନିଜର ପରିଚୟ ଦେଲେ । ଶ୍ୟାମଳ ବର୍ଣ୍ଣ, ଡେଙ୍ଗା, ବଡ଼ ବଡ଼ ଆଖି, କୁଞ୍ଚିତ ଚୁଳ । ପଛରେ ତାଙ୍କର ସ୍ତ୍ରୀ—ବହୁତ ଗେଡ଼ୀ, ଗୋରୀ, ସରୁନାକ, ନାକ କିଛି ଉପରକୁ ଉଠିଛି, ସୁନ୍ଦରୀ ଦିଶିବେ । ସବା ପଛରେ ଝିଅଟିଏ,

ମାଆ ପରି ଗେଉ଼ୀ, ବାପର ବର୍ଣ୍ଣ । ସେମାନଙ୍କ ବହୁ ଆଦରରେ, ଗତ ସପ୍ତାହରେ ରହି ନ ପାରିଥିବା ଯୋଗୁଁ କ୍ଷମା ମାଗି, ଅମେ ବସି କଥାବାର୍ତ୍ତା ଆରମ୍ଭ କଲୁ । ଘନିଷ୍ଠତା ଆଣିବାକୁ ଯାଇ ଶ୍ୟାମକୁମାର କହିଥିଲେ—ମୁଁ ବି ଓଡ଼ିଆ ଯେ ! ମୋର ଜନ୍ମ ସମ୍ବଲପୁରରେ ।

ଏତେକ ସମ୍ବାଦରେ କ'ଣ ମନ ହେଲା କେଜାଣି, ମୁଁ ଖୁସି ହୋଇଗଲି । ପଚାରିଲି—ଆପଣ ଓଡ଼ିଆ କହି ଜାଣନ୍ତି ?

—ନାଁ । ବହୁ ପିଲାଦିନେ ଓଡ଼ିଆ କଥାବାର୍ତ୍ତା ଶୁଣିଥିଲି । ସେତେବେଳେ ହୁଏତ କହି ପାରୁଥିବି, ଏବେ କିନ୍ତୁ ଭୁଲିଗଲିଣି । କିନ୍ତୁ ମୋର ମା' ଜାଣନ୍ତି । ନୀଳମଣି ସେନାପତିଙ୍କ ସ୍ତ୍ରୀଙ୍କର ମୋ ମା' ଭାରି ସାଙ୍ଗ । ଦେଖା ହେଲେ ମାଝେ ଦୁହେଁ ଦୁହିଁଙ୍କୁ କୁଣ୍ଢାଇ ପକାନ୍ତି ।

ହିନ୍ଦୀରେ ଆମମାନଙ୍କର କଥା ଚାଲିଥାଏ । ମୁଁ ବନାରସରେ ଏମ୍.ଏ. ଓ ଲ' ପଢ଼ିବାବେଳେ ହିନ୍ଦୀ କହିବାରେ ଯେଉଁ ଦକ୍ଷତା ଆସିଥିଲା, ତା ସେତେବେଳେ ମୋତେ ସାହାଯ୍ୟ କରୁଥାଏ । ଉତ୍ତର ପ୍ରଦେଶରେ ଅନେକ ବର୍ଷ ରହିଣି, ମୋର ବହୁ ସଫଳତାର ସମସ୍ତ । ସେଥିପାଇଁ ବି ସେଠା ଲୋକ ଓ ସେଠା ଭାଷା ପ୍ରତି ମୋର ଟିକିଏ ଅନୁରାଗ । ଶ୍ରୀମତୀ ଓ ମିସେସ୍ କୁମାର କିନ୍ତୁ ଇଂରାଜୀରେ ଭାବ ବିନିମୟ କରୁଥା'ନ୍ତି । ଶ୍ରୀମତୀ ହିନ୍ଦୀ ଜାଣନ୍ତି ନାହିଁ; କିନ୍ତୁ ଭଦ୍ରମହିଳାଙ୍କର ବହୁତ ଇଚ୍ଛା ହିନ୍ଦୀରେ କଥାବାର୍ତ୍ତା କରିବାକୁ । କୁମାର ଓ ତାଙ୍କ ସ୍ତ୍ରୀ—ଦୁହିଁଙ୍କ ବ୍ୟକ୍ତିତ୍ୱରେ ଆକର୍ଷଣୀ ଶକ୍ତି ଥିଲା । ସେମାନଙ୍କର ମେଳାପୀ ମନୋବୃତ୍ତି ଦେଖି ଅମେ ଖୁସି ହୋଇଗଲୁ । କଥାରେ କଥାରେ ଶ୍ୟାମକୁମାରଙ୍କ ସ୍ତ୍ରୀ ଶ୍ରୀମତୀଙ୍କୁ ହିନ୍ଦୀ ଶିଖାଇ ଦେବେ ବୋଲି କହିଲେ ଓ ଗଲାବେଳେ ମୁଁ ମଧ୍ୟ ମୋର ସ୍ତ୍ରୀଙ୍କୁ ଏ ଦିଗରେ ସାହାଯ୍ୟ କରିବା ଉଚିତ ବୋଲି କହିଗଲେ । ମୁଁ ଆଗରୁ ହିନ୍ଦୀପ୍ରତି ମୋର ଅନୁରାଗ କଥା କହିଛି । ତା'ଛଡ଼ା ବର୍ତ୍ତମାନ ଇଂରାଜୀର ବହୁ କାର୍ଯ୍ୟକୁ, ଭାରତରେ ହିନ୍ଦୀ ଭାଷାଦ୍ୱାରା କରାଯାଇଛି ଓ କରାଯିବା ଉଚିତ ବୋଲି ମୋର ମତ । ସେଥିପାଇଁ ଇଂରାଜୀରେ କଥା ହେଉଥିବାବେଳେ ହିନ୍ଦୀ କହିବାକୁ ଚେଷ୍ଟା କରୁଥିବା ଶ୍ରୀମତୀଙ୍କୁ ମୁଁ ମଧ୍ୟ ଉତ୍ସାହ ଦେଲି । ଉତ୍ତର ଭାରତରୁ ହିନ୍ଦୀ ଭାଷାଭାଷୀ ବହୁ ଗୁଜ୍ଜ ସସ୍ତ୍ରୀକ କାନାଡ଼ା ଆସି ଥା'ନ୍ତି । ଶ୍ରୀମତୀ ସେମାନଙ୍କ ସଙ୍ଗେ ଏ ଯାଏଁ ଇଂରାଜୀରେ ହି କଥା ହେଉଥିଲେ । ସେ ଦିନ ପରେ, ସେମାନଙ୍କ ସହି ସେ ହିନ୍ଦୀରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ । କିଛି ଅଧିକା ଆନ୍ତରିକତା ପାଇବେ ବୋଲି ଉପଲବ୍ଧି କରି, ହିନ୍ଦୀ ଶିଖିବାରେ ସେ ଲାଗି ପଡ଼ିଲେ । ଶ୍ୟାମକୁମାରଙ୍କ ସ୍ତ୍ରୀ ବାରମ୍ବାର ଟେଲିଫୋନ୍ କରି ହିନ୍ଦୀରେ କଥାବାର୍ତ୍ତା ହୋଇ, ଶ୍ରୀମତୀଙ୍କୁ ହିନ୍ଦୀ ଶିଖାଉଥା'ନ୍ତି । ସେହି ସମସ୍ତରେ

ମୋତେ ଲଗିଲା, ହିନ୍ଦୀ ପ୍ରଚାର ଏହି ସାଧାରଣ ହିନ୍ଦୀଭାଷୀ ଭଲଲୋକେ ଯାହା କରିପାରିବେ, ସେ କଥା ଆଉ କେହି ବା କୌଣସି ପ୍ରତିଷ୍ଠାନସମୂହ କରି ପାରିବେ ନାହିଁ । କୁଆଡ଼େ ମାଡ୍ରାସରେ, ଏହିପରି ପ୍ରୀତିଭକ୍ତିଣୀ କେତେଜଣଙ୍କ ପାଇଁ, ଗୋଟିଏ ସମୟରେ, ଲୋକେ ଘରେ ଘରେ ହିନ୍ଦୀ ଶିଖୁଥିଲେ; କିନ୍ତୁ ସବୁ ବଦଳି ଗଲା ହିନ୍ଦୀ ଫାନାଟିକ୍‌ମାନଙ୍କ ଯୋଗୁଁ, ଯେତେବେଳେ ସମ୍ବିଧାନର ନିୟମବଳରେ, ହିନ୍ଦୀକୁ ରାଷ୍ଟ୍ରଭାଷା କରିବାକୁ ସେମାନେ ଲଗିଲେ ।

ଶ୍ରୀମତୀଙ୍କ ହିନ୍ଦୀ ଜ୍ଞାନ ସହିତ ଆମ ଦୁଇ ପରିବାର ମଧ୍ୟରେ ସହୃଦୟତା ଓ ବନ୍ଧୁତା ବଢ଼ିବାକୁ ଲଗିଲା । ପ୍ରାୟ ପ୍ରତିଦିନ ସେମାନଙ୍କସହି ଆମର ଦେଖା ହେଉଥାଏ । ଦିନେ ସମସ୍ତେ ମିଶି ଟରଣ୍ଟୋର ହାଇ ପାର୍କକୁ ବୁଲିବାକୁ ଗଲୁ । ଖରାଦିନେ ଖୁବ୍ ଗରମ ହେଲେ, ଏହିପରି କୌଣସି କୌଣସି ପାର୍କକୁ ଲୋକେ ବୁଲି ଯାଆନ୍ତି । ସେହି ସବୁ ପାର୍କରେ ମନ ଖୁସି କରିବାପାଇଁ ବହୁ ପ୍ରକାର ବ୍ୟବସ୍ଥା । ଇଚ୍ଛାକଲେ ଜଣେ ସୁନ୍ଦର ଘାସରେ ଶୋଇ ଶୋଇ କ୍ଲାନ୍ତି ଭୁଲିଯାଇପାରେ ବା ପହିରିବା ପାଇଁ ନିର୍ଦ୍ଦିଷ୍ଟ ଜାଗାକୁ ଯାଇ ପହଁରି ପାରେ । ପିଲଙ୍କ ପାଇଁ ବହୁ ପ୍ରକାରର ଖେଳର ବ୍ୟବସ୍ଥା ବି ଥାଏ । ଖାଇବା ପାଇଁ ବହୁ ରେସ୍ତୋରାଁ, କାଫେ, ଟି'ଷ୍ଟଲ୍ । ଶ୍ୟାମକୁମାର ଓ ତାଙ୍କ ପରିବାରସହି ଆମର ଭଲ ପଡ଼ୁଥିବାରୁ ଷ୍ଟେଟ୍‌କାର୍‌ରେ ଯାଉଥିବାବେଳେ ଆମେ ଖୁସି ହେଉଥିଲୁ । କାରଣ ସେଇମାନେ ଇ ହାଇ ପାର୍କ ପ୍ରୋଗ୍ରାମ୍ କରି ଥାଆନ୍ତି । ଯାହାହେଉ ଏତେ ଦିନକେ ଭଲ ବନ୍ଧୁ ମିଳିଛି ବୋଲି ମିସେସ୍ କୁମାରଙ୍କ ଶ୍ରୀମତୀ କହି ସାରିଥାଆନ୍ତି । ପାର୍କର ଘାସ ଉପରେ ଅଧାଶୁଆ ହୋଇ ଶ୍ୟାମକୁମାର ମୋତେ କଣ କହୁ କହୁ ହଠାତ୍—ବଡ଼ ଅପ୍ରତ୍ୟାଶିତ ଭାବରେ—ପଚାରିଲେ—ତୁମ ଓଡ଼ିଶାରେ ଅଛି କଅଣ ? କଅଣ ଓଡ଼ିଶାର ମହତ୍ତ୍ୱ ?

ମୁଁ ଏପରି ମନ୍ତବ୍ୟରେ ଆଶ୍ଚର୍ଯ୍ୟ ହୋଇ ରହିଗଲି । ସେ କିନ୍ତୁ କହି ବୁଲି ଥାଆନ୍ତି—କିଛି ନୁହଁ । ଉତ୍ତର ପ୍ରଦେଶ ପରି ଓଡ଼ିଶାର ବି କିଛି ନାହିଁ ।

ଶେଷ ବାକ୍ୟଟି ତାଙ୍କ ମନକଥା ହୋଇଥାଉ ବା ନ ହୋଇଥାଉ ତାଙ୍କ କଥା ଶୁଣି ମୋତେ ଖୁବ୍ ରାଗ ଲଗିଲା । ଲଗିଲା ଯେପରି ଜାଣି ଜାଣି ସେ ମୋତେ ପାର୍କକୁ ଡାକି ନେଇ ଅପମାନ ଦେବାକୁ ଇଚ୍ଛାକରି, ଏ କଥା କହିଛନ୍ତି । ପାର୍କକୁ ଆସିବା ତାଙ୍କର ପଛ, ବନ୍ଧୁତା ତାଙ୍କର ପଛୁ ସୃଷ୍ଟି ହୋଇଥିଲା ମଧ୍ୟ । ମୁଁ ଉତ୍ତର ଦେଲି—ଓଡ଼ିଶାର ଇତିହାସ କ'ଣ ତୁମେ ଜାଣିନାହଁ ?

ଶ୍ୟାମକୁମାରଙ୍କ ସ୍ତ୍ରୀ କହିଲେ—ଏଠି ଇତିହାସ କଥା ପଡ଼ିନାହିଁ । ବର୍ତ୍ତମାନ ସମୟର କଥା ପଡ଼ିଛି । ଇତିହାସରୁ କ'ଣ ମିଳିବ ? ମୋର ଭଉଣୀ ବି ଆମେ ଯେବେ

ଉତ୍ତର ପ୍ରଦେଶକୁ ନିନ୍ଦା କରନ୍ତୁ, ସେତେବେଳେ ଏହିପରି ଇତିହାସ ଇତିହାସ ହେବ, ତେଣୁ ଆଜିକାଲିକା ଓଡ଼ିଶା କଣ କରିଛି, ସେ କଥା କହନ୍ତୁ । କେତେଜଣ ଓଡ଼ିଆ ସେମାନଙ୍କ କାମପାଇଁ ସାରା ଭାରତରେ ବିଖ୍ୟାତ ହୋଇ ପାରିଛନ୍ତି ? ଦଶଜଣଙ୍କ ନାମ କହିଲେ ।

ମୁଁ କହିଲି—"ଭାରତରେ ନାମ" ଏକ ବଡ଼ ଭ୍ରାନ୍ତିକର କଥା । ଓଡ଼ିଶାକୁ ଯଦି ଭାରତର ଅଂଶ ବିଶେଷ କରି ନିଆଯାଏ, ତାହାହେଲେ ବହୁ ଲୋକ ଓଡ଼ିଶା ପାଇଁ କାମ କରିଛନ୍ତି, ଯେପରି ବହୁ ଆନ୍ଧ୍ର ଲୋକ ତେଲୁଗୁ ଭାଷୀମାନଙ୍କ ପାଇଁ କାମ କରିଛନ୍ତି, ବହୁ ମରାଠୀ ମହାରାଷ୍ଟ୍ର ପାଇଁ । ସେପରି କରିବା ଦ୍ୱାରା ସେମାନେ ଭାରତର ହିଁ କାମ କରିଛନ୍ତି ବୋଲି କୁହାଯାଇ ପାରିବ ।

ମୁଁ ମିସେସ୍ କୁମାରଙ୍କ ସହିତ କଥା ହେଉଥିଲି । ମଝିରେ ଶ୍ୟାମକୁମାର କହିଲେ—ହଉ, ହଉ ବର୍ତ୍ତମାନ ଦଶଜଣ ଓଡ଼ିଆଙ୍କ ନାମ କହନ୍ତୁ, ଯେଉଁମାନେ ସର୍ବଭାରତୀୟ ସ୍ତରରେ ବିଖ୍ୟାତ ହୋଇଥିବେ ।

ମୁଁ କହିଲି—ଅଧୈର୍ଯ୍ୟ କାହିଁକି ହେଉଛନ୍ତି ? ଖ୍ୟାତି ଆଉ ଏକ କଥା ଯାହା ପ୍ରୋପାଗଣ୍ଡା ମେସିନ୍ ଉପରେ ନିର୍ଭର କରେ ଯେପରିକି ଖବର କାଗଜ, ଫିଲ୍ମ, ଟିଭି, ଇତ୍ୟାଦି । ସେ ଦୃଷ୍ଟିରୁ ମଧ୍ୟ ମୁଁ ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ବିଜୁ ପଟ୍ଟନାୟକ, ସୁରେନ୍ଦ୍ର ଦ୍ୱିବେଦୀ, ନିତ୍ୟାନନ୍ଦ କାନୁନ୍‌ଗୋ, ସାହିତ୍ୟରେ କାଳିନ୍ଦୀ ଚରଣ, ଗୋପିନାଥ ମହାନ୍ତି, ସଚ୍ଚି ରାଉତରାୟ ପ୍ରଭୃତିଙ୍କ ନାମ ନେଇ ପାରିବି । ସେ ଦୁହେଁ ଉତ୍ତର ପ୍ରଦେଶରୁ ଆସିଥିଲେ ମଧ୍ୟ ଏମାନଙ୍କ ମଧ୍ୟରୁ କୌଣସି ଲୋକଙ୍କୁ ଜାଣିଥିବା ପରି ଜଣା ପଡ଼ିଲାନାହିଁ । ତେଣୁ ମୁଁ ପଚାରିଲି—ତୁମ ପ୍ରଦେଶର ଗଭର୍ଣ୍ଣରଙ୍କ ନାମ ତୁମେ ଜାଣିନାହଁ ?

ସେମାନେ ଭାବି ଭାବି ମୋତେ କହିଲେ—ବିଶ୍ୱନାଥ ଦାସ, କିନ୍ତୁ ସେ କ'ଣ ଓଡ଼ିଆ ?

—ଶ୍ୟାମ କୁମାର ! ତୁମେ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟରିଂରେ ସର୍ବୋଚ୍ଚ ଡିଗ୍ରୀ ପାଇଛ । କମନ୍‌ୱେଲଥ୍ ସ୍କଲର ହୋଇ କାନାଡ଼ା ଆସିଛ । ତୁମେ, ତୁମ ଗଭର୍ଣ୍ଣର୍ କେଉଁ ପ୍ରଦେଶର ଲୋକ ତାହା ଜାଣିନ ?

—ତୁମେ ଯାହା କହ, ମିଷ୍ଟର୍ ମିଶ୍ର ହୀରାକୁଦ ଡ୍ୟାମ୍ ପରେ ଇ ଲୋକମାନେ ଓଡ଼ିଶାକୁ ଜାଣିଲେ—ଶ୍ୟାମକୁମାର ହସି ହସି କହିଲେ । ମୁଁ କିଛି କହିଲି ନାହିଁ । ସେମାନେ ଏତେ ଶିକ୍ଷିତ ହୋଇ ଓ ମୋର ଏତେ ଘନିଷ୍ଠ ବନ୍ଧୁ ହୋଇ ଓଡ଼ିଶା

ପ୍ରତି ଏପରି ମନ୍ତବ୍ୟ ପ୍ରକାଶ କରିବେ ବୋଲି ମୁଁ ଆଶା କରି ନ ଥିଲି । ସେଦିନ ପାର୍କର ମନ୍ତବ୍ୟ ପରେ ବାକିତକ ସମସ୍ତ ଆଉ ମଜାରେ କଟିଲା ନାହିଁ । ସିଦ୍ଧାର୍ଥ ଉପରେ ମୁଁ ବୃଥାରେ ବିରକ୍ତ ହେବାକୁ ଲାଗିଲି । ଶ୍ରୀମତୀ ସବୁ ବୁଝି ପାରୁଥାନ୍ତି । ସିଦ୍ଧାର୍ଥ ବଲ ଖେଳୁ ଖେଳୁ ଶ୍ୟାମକୁମାରଙ୍କ ଝିଅ ମୈନକୁ କନ୍ଦାଇ ଦେଇଥାଏ । ମୁଁ ଖୁବ୍ ରାଗି ସିଦ୍ଧାର୍ଥକୁ ଗାଳି ଦେଲି । ଶ୍ରୀମତୀ କ୍ଳାନ୍ତ ହୋଇ ଯାଇଥିବାର ବାହାନା କରି ଘରକୁ ଫେରିବାର ପ୍ରସ୍ତାବ ଦେଲେ । ସମସ୍ତେ ଫେରିଲୁ ।

ଯେଉଁ ଘଟଣା ଓଡ଼ିଶାରେ ଘଟୁଥିଲେ ମୁଁ ସେଥିପ୍ରତି ଆଦୌ ମହତ୍ତ୍ୱ ଦେଇ ନଥାନ୍ତି, ସେହି କଥା କାନାଡ଼ାରେ ଘଟିବାରୁ ମୋତେ ଖୁବ୍ ବାଧିଲା । ଦୂରଦେଶରେ, ନିଜ ଜନ୍ମଭୂମି, ନିଜ ମାତୃଭାଷାର ଗୌରବ ଶୁଣିବା ଓ ଅନ୍ୟମାନଙ୍କୁ ଶୁଣାଇବା ପାଇଁ ମଣିଷର ଇଚ୍ଛା ହୁଏ, ନିନ୍ଦା ନୁହେଁ । ଏହି ଘଟଣା ପରେ ଆମ ଦୁଇ ପରିବାରର ବନ୍ଧୁତା ମଳିନ ପଡ଼ିବାକୁ ଲାଗିଲା, ଯେଉଁମାନଙ୍କଠାରୁ ଦିନେ ଫୋନ୍ ନ ଶୁଣିଲେ କି ଯେଉଁମାନଙ୍କୁ ଫୋନ୍ ନ କଲେ, ହୃଦୟ ଅଶାନ୍ତ ହୋଇ ଉଠୁଥିଲା, ସେମାନଙ୍କୁ ଫୋନ୍ କରିବାକୁ ଆଉ ଇଚ୍ଛା ହେଲାନାହିଁ । ଫୋନ୍ ବାଜିଲେ କାଳେ ସେମାନଙ୍କ ପାଖରୁ ଫୋନ୍ ଆସିଥିବ ଭାବି ରିସିଭର ବି ଉଠାଇବାରେ ଆମେ ଅବହେଳା କରିବାରେ ଲାଗିଲୁ ।

ପରେ ଅନ୍ୟାନ୍ୟ ବନ୍ଧୁ ଉତ୍ସବରେ ଆମେମାନେ ସେମାନଙ୍କୁ ଦେଖୁ । କିନ୍ତୁ ସବୁବେଳେ ମୁଁ ଓଡ଼ିଶା ନେଇ କିଛି ନିନ୍ଦା ଶୁଣିଲେ ଯେପରି ଯୁକ୍ତି କରିବା ପରିବର୍ତ୍ତେ ସେମାନଙ୍କୁ ଚୁପ୍ ଇ କରି ଦେଇ ପାରିବି, ଯେହି ପ୍ରୟାସରେ ରହିଲି; କିନ୍ତୁ ସେ ଜଣେ ହୋଇଥିଲେ ସିନା ହୋଇଥାନ୍ତା ! ଭାରତର ଅନ୍ୟାନ୍ୟ ପ୍ରଦେଶର ଲୋକଙ୍କଠାରୁ ଓଡ଼ିଶା ନେଇ ଆହୁରି କିମ୍ଭୂତ କିମାକାର ମତାମତ ଶୁଣି ଆମେମାନେ ଶେଷରେ ନିରାଶ ହୋଇପଡ଼ିଲୁ । ସନ୍ଧ୍ୟାରେ କୌଣସି ବଙ୍ଗୀୟ ବନ୍ଧୁଙ୍କୁ ଅଭ୍ୟର୍ଥନା କରି ନମସ୍କାର କଲେ, ସେ ସଙ୍ଗେ ସଙ୍ଗେ ଆମକୁ ପଚାରନ୍ତି—ଆମ ଭାଷା ତୁମେ କିପରି ଜାଣିଲ ? ତୁମେ କ'ଣ ବଙ୍ଗାଳୀ ! ନ ହେଲେ ଆମର ପଢ଼ା ଟେବୁଲ ଉପରେ ରଖା ହୋଇଥିବା 'ଝଙ୍କାର'କୁ ଦେଖି ପଢ଼ିବାର ଚେଷ୍ଟା କରି, କିନ୍ତୁ ନ ପାରି ଶେଷରେ କହିବେ, ତାଙ୍କର ଧର୍ମପତ୍ନୀଙ୍କୁ—ବୁଝିଲ ! ଆମରି ଭାଷା ମ, କିନ୍ତୁ ତେଲୁଗୁ ଅକ୍ଷର । ସେଥିପାଇଁ ପଢ଼ି ହୁଏ ନାହିଁ; କିନ୍ତୁ ବୁଝି ହୁଏ, କହିଲେ । ସେମାନଙ୍କ କଥା ଶୁଣି ଶ୍ରୀମତୀ ହସିବେ କି କାନ୍ଦିବେ କିଛି ଠିକ୍ କରି ନ ପାରି ଚା'ର ବ୍ୟବସ୍ଥା କରିବାକୁ ରୋଷାଇ ଘରକୁ ଚାଲି ଯାଆନ୍ତି, ଆଉ ମୁଁ ଗମ୍ଭୀର ହୋଇ, ଇଂରାଜୀରେ ପାଗ କଥା କି ସେମାନଙ୍କ ପଢ଼ାପଢ଼ି କଥା ପଚାରେ । କଥା ବୁଲିଯାଏ, ସମସ୍ତେ ଖୁସି ହୋଇ ଅନ୍ୟ କଥା ପକାଉ । ସେମାନେ ଚାଲିଗଲା ପରେ ଶ୍ରୀମତୀ ଦୁଃଖରେ କହନ୍ତି—ଆହା !

ଭାରତରେ ଭଗବାନ୍ କେବଳ ଗୋଟିଏ ଭାଷା ପ୍ରଚଳନ କରିଥାଆନ୍ତେ କି ? ତାହେଲେ ତ ଏତେ କଳି, ତକରାଳ, ମନଦୁଃଖ ନଥାନ୍ତା । ଆମେ ସବୁ ଜାଣି ପାରୁଛୁ, ବଙ୍ଗାଳୀ କି ହିନ୍ଦୀଭାଷୀ ଲୋକ ଆମ ମନ କଥା ବୁଝି ପାରୁ ନାହାନ୍ତି !

କେହି କେହି ଓଡ଼ିଆ ବନ୍ଧୁ ଶ୍ରୀମତୀଙ୍କର ମନ୍ତବ୍ୟ ଶୁଣି କହନ୍ତି,—ଭାରତୀୟ-ମାନଙ୍କ କଳି ତକରାଳ ମୂଳରେ ସେମାନଙ୍କ ଦାରିଦ୍ର୍ୟ ରହିଛି । ସେମାନଙ୍କର ବସ୍ତୁ କୁସଂସ୍କାର ଆଉ ବୈଜ୍ଞାନିକ ଚେତନାର ଅଭାବ; ଭାଷା ଅଲଗା ଅଲଗା ବୋଲି ନୁହେଁ ।

ତା'ପରେ କଣ କଲେ ଲୋକଙ୍କ ଭିତରେ ବିଜ୍ଞାନ ଚେତନା ବଢ଼ିବ, କୁସଂସ୍କାର ଯିବ, ଦାରିଦ୍ର୍ୟ ଯିବ, ସେଇ କଥା ନେଇ ଆଲୋଚନା ଚାଲେ । ବାୟୁମଣ୍ଡଳ ସରଗରମ ହୁଏ ଯେତେବେଳେ ଭାରତୀୟ ଧର୍ମ ଓ ଦର୍ଶନକୁ କେହି କେହି ଏହି କୁସଂସ୍କାରର ଅଂଶ ରୂପେ ନେଇ ଯୁକ୍ତି କରିବାକୁ ଆରମ୍ଭ କରି ଦିଅନ୍ତି । ଶ୍ରୀମତୀ କଥା ମଝିରେ ଉଠିଯାଇ ଚା' ତିଆରି କରନ୍ତି । ଫଳ କିଛି ହୁଏ; କିନ୍ତୁ ଆଲୋଚନା ଭାଙ୍ଗେ ନାହିଁ । ଆଉ ସେହିପରି ସମୟରେ ଆମେ ଟି.ଭି. ସମ୍ବାଦଦାତାଙ୍କଠୁ ଶୁଣୁ, କ୍ୟୁବେକବାସୀ କାନାଡ଼ିଆନମାନଙ୍କ ପ୍ରତିଜ୍ଞା—ସେମାନେ ଏକ ସ୍ୱତନ୍ତ୍ର ଗଣତାନ୍ତ୍ରିକ ରାଷ୍ଟ୍ର କରିବେ, କାନାଡ଼ାରୁ ବିଚ୍ଛିନ୍ନ ହୋଇଯିବେ—କାରଣ ସେମାନଙ୍କର ଭାଷା ଫ୍ରେଞ୍ଚ, ସଂସ୍କୃତି ଫ୍ରେଞ୍ଚ । କାନାଡ଼ାର ଅନ୍ୟାନ୍ୟ ପ୍ରଦେଶବାସୀଙ୍କ ଭାଷା ଇଂରାଜୀ, ସଂସ୍କୃତି ମାର୍କିନ୍ ଓ ଇଂଲଣ୍ଡୀୟ ଆଦ୍ଧର ବିଶ୍ବରର ଏକ ଖେଚେଡ଼ି !



# ଚରୈବେତି

ଟି.ଭି.ରେ "ଷ୍ଟାରଟ୍ରେକ୍" ବୋଲି ଫିଲ୍ମଟିଏ ମୁଁ ସିଦ୍ଧାର୍ଥ ସହିତ ଦେଖୁଥାଏ। ଫିଲ୍ମଟି ପ୍ରକୃତରେ ପିଲାଙ୍କ ପାଇଁ ଉଦ୍ଦିଷ୍ଟ; କିନ୍ତୁ ବେଳେ ବେଳେ ସବୁ ବଡ଼ ମଣିଷଙ୍କର ପିଲା ହୋଇଯିବା ପାଇଁ ଇଚ୍ଛା ହୁଏ। ଆଉ ବିଶେଷ କରି ଯଦି ସେହି ବଡ଼ ମଣିଷଟି ରିସର୍ଚ୍ଚ କରିବା ଆରମ୍ଭ କରିଥାଏ। ରିସର୍ଚ୍ଚର ଗମ୍ଭୀର ଚିନ୍ତାରୁ ମୁକ୍ତି ପାଇବାକୁ ଇଚ୍ଛାକରି କୌଣସି ପ୍ରସିଦ୍ଧ ଡାଇରେକ୍ଟର କି ପ୍ରଡ୍ୟୁସରଙ୍କ ଫିଲ୍ମ ଦେଖିବା ଅର୍ଥ ନିଜର ଭାରାକ୍ରାନ୍ତ ମନକୁ ଆହୁରି ଭାରାକ୍ରାନ୍ତ କରିବା। ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଦର୍ଶନ ବହି ପଢ଼ୁଥିବା ଭିତରେ ଡିଟେକ୍‌ଟିଭ ବହି ପଢ଼ିବା ଅଭ୍ୟାସ ଓ ଉଇଟ୍‌ଗେନ୍‌ଷ୍ଟାଇନ୍‌ଙ୍କ ଦର୍ଶନ ଚର୍ଚ୍ଚା ମଝିରେ ସବୁ ଛାଡ଼ିଛୁଡ଼ି ଦେଇ ଯେ କୌଣସି ଫିଲ୍ମ ଶୋ ଚାଲୁଥିବା-ବେଳେ ଆଗ ସିଟ୍‌ରେ ଯାଇ ବସିବା କଥା, ଏହିଥିରୁ ବୁଝାଯିବ। ରାତିରେ ଟି.ଭି. ଆଗରେ ବସି ବନ୍ଧୁମାନଙ୍କ ଯୁଦ୍ଧ, ହତ୍ୟା, ଶାନ୍ତି, ହସ, କାନ୍ଦର ସିନେମା—ଲେଟ୍ ଲେଟ୍ ଶୋ ଶ୍ରୀମତୀଙ୍କୁ ଦେଖିବା ପାଇଁ ଛାଡ଼ି ଦେଇ ମୁଁ ନିଜେ ଦେଖେ ସିଦ୍ଧାର୍ଥ ସହିତ "ବ୍ୟାଟମ୍ୟାନ୍", "ଷ୍ଟାରଟ୍ରେକ୍", ନ ହେଲେ "ଲଷ୍ଟ ଇନ୍ ସ୍ପେସ୍।" ପିଲାଙ୍କ ପାଇଁ, ସେମାନଙ୍କ ମନ ଖୁସିପାଇଁ ଉଦ୍ଦିଷ୍ଟ ହୋଇଥିଲେ ମଧ୍ୟ ସେହି ସବୁ ଫିଲ୍ମରେ ସେହି ଦେଶର କୋଟି କୋଟି ଲୋକେ ବିଶ୍ୱାସ କରୁଥିବା, ଜୀବନ ଦର୍ଶନ ପ୍ରତିଫଳିତ ହୋଇ ଯାଇଥାଏ। ସନ୍ଧ୍ୟା ସାତ ଆଡ଼େ ଗୃହିଁ, ହେ ଭଗବାନ ଏ ତପସ୍ୟାରେ ଅବସାନ ହେଉ, ପ୍ରାର୍ଥନା କରି କରି ମୁଁ ଲାଇବ୍ରେରୀରୁ ଫେରେ ଓ କିଛି ଟିକିଏ ଜଳଖିଆ କରିଦେଇ, ସିଦ୍ଧାର୍ଥସହ ଟି.ଭି. ଆଗରେ ବସିଯାଏ। ଡ୍ରଇଁ ରୁମ୍‌ର ସେପଟେ ରନ୍ଧା ଘରେ ବ୍ୟସ୍ତଥିବାବେଳେ ସିଦ୍ଧାର୍ଥର କୁହାଟ ବା ଫିଲ୍ମ ଭିତରର ସଙ୍ଗୀତ ଶୁଣି ମଝିରେ ମଝିରେ ଶ୍ରୀମତୀ ଆମମାନଙ୍କ ସହିତ ଯୋଗ ଦିଅନ୍ତି। ତାଙ୍କ ସହିତ ଛୁଙ୍କ କ ଗରମ ମସଲାର ବାସ୍ନା ମଧ୍ୟ ଆମ ପାଖକୁ ଚାଲି ଆସେ ଓ ଟି.ଭି. ଶୋ ପରେ ପରେ ଯେ ଆମେମାନେ ଖାଇବାକୁ ପାଇବୁ, ସେ କଥା ଯଥାର୍ଥ ଭାବେ ଜାଣିପାରି ଆମେ ଖୁସି ହେଉ।

ଭବିଷ୍ୟତ ବିଶ୍ୱରେ ଯେତେବେଳେ ବହୁ ବିଭିନ୍ନ ସ୍ୱତନ୍ତ୍ର ଦେଶ ସବୁ ନ ଥିବେ, ସମସ୍ତ ପୃଥିବୀ ଗୋଟିଏ ଗଣତାନ୍ତ୍ରିକ ସରକାରଙ୍କର ଶାସନାଧୀନ ହୋଇ

ଯାଇଥିବ, ଯେତେବେଳେ ସେହି ସରକାର ଯୁଦ୍ଧର ଅପବ୍ୟୟରୁ ମୁକ୍ତ ହୋଇ ମାନବ ସମାଜର କଲ୍ୟାଣପାଇଁ, ବିଜ୍ଞାନପାଇଁ ନୂତନ ଜ୍ଞାନାର୍ଜ୍ଜନ ପାଇଁ, ତାର ସ୍ପେସ୍‌ସିପ ପଠାଇ ବିଶ୍ୱର ବହୁ ଅଜଣା ଅଶୁଣା ଅଞ୍ଚଳ ଆବିଷ୍କାର କରୁଥିବ—"ଷ୍ଟାରଟ୍ରେକ୍" ସେହି କାଳ୍ପନିକ ସମୟର କାଳ୍ପନିକ କଥା । ସେହି ଅଦ୍ଭୁତ ସ୍ପେଶସିପ୍‌ରେ ଆଫ୍ରିକା, ଚୀନ, ଭାରତ – ସବୁ ଦେଶରୁ ଲୋକେ କାମ କରୁଥିବେ, କେହି ବୈଜ୍ଞାନିକ ଭାବେ, କେହି ଡାକ୍ତର ହୋଇ, କେହି କର୍ମଚାରୀ ହୋଇ । ବିଜ୍ଞାନର ଜୈତ୍ର ଗୀତିକା ଓ ମାନବ ସମାଜର ଏକତାର ସଙ୍ଗୀତ ଗାଇ ଗାଇ ସେହି ଅନ୍ତରୀକ୍ଷଯାନ ମହାଶୂନ୍ୟ ଗର୍ଭରେ ଗ୍ରହରୁ ଗ୍ରହକୁ, ଗାଲାକ୍‌ସିରୁ ଗାଲାକ୍‌ସିକୁ ବୁଲୁଥିବ । ସେ ଦିନର ଗଳ୍ପ ଏହିପରି ଆରମ୍ଭ ହୁଏ । ଫେରନ୍ତା ବାଟରେ ସେହି ଯାନଟି କୌଣସି ଏକ ଗ୍ରହ ବାଟ ଦେଇ ଆସିବାବେଳେ ସେଠି ପୂର୍ବରୁ କଲୋନୀ ପ୍ରତିଷ୍ଠା ପାଇଁ ଛଡ଼ା ଯାଇଥିବା ମଣିଷମାନଙ୍କୁ ବାର୍ତ୍ତା ପଠାଗଲା । କିନ୍ତୁ ଯାନର ବାର୍ତ୍ତାକୁ ସେହି ଗ୍ରହରୁ କେହି ଗ୍ରହଣ କଲେନାହିଁ, ସେଠୁ କିଛି ଉତ୍ତର ଆସିଲା ନାହିଁ । ଯାନର କ୍ୟାପ୍‌ଟେନ୍ ଚିନ୍ତିତ ହୋଇ ପଡ଼ିଲେ—କଣ ହେଲା, କଲୋନୀ ପ୍ରତିଷ୍ଠା ପାଇଁ ଛଡ଼ା ଯାଇଥିବା ସେହି ଲୋକମାନଙ୍କର ? ଯାନର ଗତିପଥକୁ ବଦଳାଇ, ବିପଦରେ ପଡ଼ିଥିଲେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସେମାନେ ସେହି ଗ୍ରହ ପୃଷ୍ଠରେ ଓହ୍ଲାଇଲେ ଓ ଦେଖିଲେ ପୂର୍ବରୁ ପ୍ରତିଷ୍ଠା କରାଯାଇଥିବା ଯନ୍ତ୍ରପାତି ସବୁ ନଷ୍ଟ ହୋଇ ଯାଇଛି, ରିସର୍ଚ୍ଚ ପାଇଁ ତିଆରି ହୋଇଥିବା ଘରେ ଗଛ-ଲତା ଉଠି ଜଙ୍ଗଲ ମାଡ଼ି ଗଲାଣି, ସହରଟିରେ ଯାନ କି ଲୋକ ଚଳପ୍ରଚଳର କୌଣସି ସଙ୍କେତ ନାହିଁ । ସତେ ଯେପରି କୌଣସି ଶତ୍ରୁ ଆକ୍ରମଣରେ ମଣିଷ ବସତିଟି ଧ୍ୱସ୍ତ ବିଧ୍ୱସ୍ତ ହୋଇ ଯାଇଛି, ଅଉ ସେଇଥିପାଇଁ ହୁଏତ ଅନ୍ତରୀକ୍ଷ ଯାନରୁ ପଠା ଯାଇଥିବା ସମ୍ବାଦକୁ କେହି ଗ୍ରହଣ କରି ପାରିଲେ ନାହିଁ କି ଉତ୍ତର ପଠାଇ ପାରିଲେ ନାହିଁ । ଚିନ୍ତିତ ହୋଇ କ୍ୟାପ୍‌ଟେନ୍ ସଙ୍ଗୀମାନଙ୍କ ସହ ସହରର ଗୋଟିଏ ରାସ୍ତାରୁ ଆଉ ଗୋଟିଏ ରାସ୍ତାକୁ ବୁଲିଆନ୍ତି, ହଠାତ୍ ସହର ଉପକଣ୍ଠରେ ଥିବା ଜଙ୍ଗଲରୁ ମଣିଷର ହସର ଲହରୀ ଭାସି ଆସିଲା । ଆନନ୍ଦରେ, ଗମ୍ଭୀର ଆନନ୍ଦରେ ମଜ୍ଜି ଗଲେ, ମଣିଷ ଯେପରି ହସିବ—ପୂର୍ଣ୍ଣ ପ୍ରାଣର ହସ—ଅନୁଚ୍ଚ ପର୍ବତରୁ ତଳକୁ ଡେଉଁଥିବା ଝରଣାର ଶବ୍ଦ ପରି । କ୍ୟାପଟେନ୍ ଶେଷ ଗଳି ପାର ହୋଇ ଦେଖନ୍ତି, ସେହି କଲୋନୀର ନେତା ଗଛଟିଏ ଉପରେ ବସି ହସୁଛନ୍ତି, ତାଙ୍କ ପାଖରେ ତାଙ୍କର ପ୍ରେମିକା । ଆଉ ଅନ୍ୟାନ୍ୟ ଗଛଗୁଡ଼ିକରେ ସେହିପରି ପୁରୁଷ ସ୍ତ୍ରୀ ହଳ ହଳ ବସି, ହସିବାରେ ବ୍ୟସ୍ତ । କ୍ୟାପଟେନ୍‌ଙ୍କୁ ଦେଖି ଗଛ ଉପରୁ ଓହ୍ଲାଇବାର କୌଣସି ଉପକ୍ରମ ମଧ୍ୟ ସେମାନେ କଲେ ନାହିଁ, କି ତାଙ୍କର ସଦଳବଳ ଉପସ୍ଥିତିରେ କେହି ଆଶ୍ଚର୍ଯ୍ୟ ବି ହେଲେ ନାହିଁ । ସେମାନଙ୍କ ହସିବା ଅବ୍ୟାହତ ରହିଲା । କ୍ୟାପ୍‌ଟେନ୍ ସେମାନଙ୍କର ବ୍ୟବହାରରେ ଆଶ୍ଚର୍ଯ୍ୟ ହେଲେ । ଆଶ୍ଚର୍ଯ୍ୟ ହେଲେ ସେମାନଙ୍କର ନିର୍ଦ୍ୱନ୍ଦ୍ୱ, ନିର୍ଲଜ ଓ ସ୍ୱଚ୍ଛନ୍ଦ ହସ ଦେଖି ।

ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ ହେଲା । ସେ ଦେଖିଲେ, ସେହି କଲୋନୀରେ ସବୁ ଲୋକେ ସୁଖୀ, ସ୍ୱାସ୍ଥ୍ୟବାନ ଓ ସବଳ; କିନ୍ତୁ କେହି ହେଲେ କାର୍ଯ୍ୟ ତତ୍ପର ହେଉ ନ ଥାଲେ, କୌଣସି କାରଣରୁ ଶିଶୁମାନଙ୍କ ପରି ସେମାନଙ୍କ ବୁଦ୍ଧିବୃତ୍ତି ହୋଇ ଯାଇଥିଲା ଯେପରି । ଅନ୍ୟପକ୍ଷରେ କ୍ୟାପ୍‌ଟେନ୍ ଓ ଅନ୍ତରୀକ୍ଷ-ଯାନର ଅନ୍ୟାନ୍ୟ କର୍ମୀମାନଙ୍କ କାର୍ଯ୍ୟତତ୍ପରତା, ବ୍ୟାକୁଳତା ଓ ଉଦ୍‌ବେଗ ଦେଖି ସେମାନଙ୍କୁ ଅଧମ ଶ୍ରେଣୀର ମଣିଷ ରୂପେ ଦୟା ଦୃଷ୍ଟିରେ ସେମାନେ ଦେଖିବାକୁ ଆରମ୍ଭ କଲେ । ଜଣେ ତରୁଣୀ କିଛି ଦୟା ଓ ଆପାତତଃ କିଛି ପ୍ରେମଭାବ ସହିତ କ୍ୟାପ୍‌ଟେନକୁ ଗୋଟିଏ ଗଛ ଦେଖାଇ ତା'ର ରସ ପିଇ ସେମାନେ ସମସ୍ତ ଚିନ୍ତା, ଦୁଃଖ ଓ ଉଦ୍‌ବେଗରୁ ମୁକ୍ତ ହୋଇ ପାରିଛନ୍ତି ବୋଲି କହିଲେ । ବୃକ୍ଷଟିର ରସାସ୍ୱାଦନ ପାଇଁ ସେ କ୍ୟାପ୍‌ଟେନଙ୍କୁ ଅନୁରୋଧ ମଧ୍ୟ କଲେ; କିନ୍ତୁ କ୍ୟାପ୍‌ଟେନ୍ ଓ ତାଙ୍କର ସହକର୍ମୀମାନେ ସେହି ବୃକ୍ଷର ରସ ଚାଖିବା ପରିବର୍ତ୍ତେ, ସେହି ବୃକ୍ଷ ଓ ସେହି ଜାତିର ଅନ୍ୟାନ୍ୟ ସବୁ ଗଛକୁ ଓପାଡ଼ି ନଷ୍ଟ କରି ଦେଲେ । ସେମାନଙ୍କର କାର୍ଯ୍ୟକୁ ପ୍ରତିବାଦ କରିବାକୁ ସେହି କଲୋନୀର ଉଦ୍‌ବେଗ ମୁକ୍ତ ସେହି ଲୋକଙ୍କ ଭିତରେ କାହାର ଶକ୍ତି ନ ଥିଲା, ଇଚ୍ଛା ମଧ୍ୟ ନ ଥିଲା । କିଛିଦିନ ସେହି ବୃକ୍ଷରସ ପିଇବା ଅଭାବରେ ସେହି ଲୋକମାନଙ୍କର ପୂର୍ବ ମନୋଭାବ ଫେରି ଆସିଲା ଓ ପୁଣି କଲୋନୀଟି ଗବେଷଣାର ଏକ କେନ୍ଦ୍ର ହୋଇ ପାରିଲା । ସେହି ଗ୍ରହ ଛାଡ଼ି ଯିବା ପୂର୍ବରୁ କ୍ୟାପ୍‌ଟେନ୍ ତାଙ୍କର ସଙ୍ଗୀମାନଙ୍କୁ ଉଦ୍‌ବୋଧନ ଦେଇ କହିଛନ୍ତି—ମଣିଷ ଏହି ସଂସାରରେ ବଞ୍ଚିଥିବା ଯାକେ, ଅମର କି ଚିର ସୁଖୀ ହେବାପାଇଁ ଚେଷ୍ଟା କରିବା ନିରର୍ଥକ । ଏହି ସଂସାରରୁ ମୋକ୍ଷ ପାଇ ଯିବାପାଇଁ ମଣିଷ ତିଆରି ହୋଇନାହିଁ । ମଣିଷର ଭାଗ୍ୟରେ ଅଛି, ସେ ବଞ୍ଚିଥିବା ଯାଏଁ ସଂଘର୍ଷ କରିବ, ଆଉ ସେହି ସଂଘର୍ଷ ମାଧ୍ୟମରେ ତା'ର ଭାଗ୍ୟର ଅଭିବୃଦ୍ଧି କରାଇବ । ତା' ଭାଗ୍ୟରେ ନାହିଁ ସେ କର୍ମର ଶେଷ ସୀମାରେ ପହଞ୍ଚି ଅକ୍ଷୟ ସୁଖ, ଅନନ୍ତ ଶାନ୍ତିର ଅଧିକାରୀ ହୋଇଯିବ । ନଖରେ ରାମ୍ପୁଡ଼ି ରାମ୍ପୁଡ଼ି ସଭ୍ୟତାର କାନ୍ଥ ଉପରକୁ ସେ ଉଠୁଥିବ, ପଡ଼ୁଥିବ ପୁଣି ଉଠୁଥିବ । ତେଣୁ ଅମରତ୍ୱ, ଜୀବନ୍ମୁକ୍ତି, ପରମ ସୁଖ ଆଶା କରିବା ମାନବ ପାଇଁ ନିରର୍ଥକ ।

ସିଦ୍ଧାର୍ଥ ଫିଲ୍ମଟିକୁ ଦେଖି ଏହି ସବୁ କଥା କେବେ ବୁଝିପାରି ନ ଥିବ; କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଲି କ୍ୟାପ୍‌ଟେନ୍ ତୁଣ୍ଡରେ କାମ୍ୟୁର "ମିଥ୍ ଅଫ୍ ସିସିଫସ୍"ର ଦର୍ଶନ ଶୁଣି । କାମ୍ୟୁ ଫ୍ରାନ୍‌ସର ପ୍ରସିଦ୍ଧ ସ୍ଥିତିବାଦୀ ଦାର୍ଶନିକ । ଗ୍ରୀକ୍ ପୁରାଣ ଗଳ୍ପ ଅବଲମ୍ବନରେ ସିସିଫସ୍‌କୁ ମଣିଷ ସମାଜର ପ୍ରତିନିଧି କରି ନେଇ ସେ ଲେଖିଛନ୍ତି ଯେ ସିସିଫସ୍ ଅଭିଶପ୍ତ । ଚିରଦିନ ଯାଏ ସେ ପଥରଟିଏକୁ ଗଡ଼ାଇ ଗଡ଼ାଇ ନେଇ ପର୍ବତ ଶିଖର ଯାଏ ଯିବ, କିନ୍ତୁ ଶିଖରରେ ପହଞ୍ଚିବା ମାତ୍ରେ ହିଁ ପଥରଟି ତଳକୁ ଗଡ଼ି ଆସିବ । ସିସିଫସ୍ ତଳକୁ ଫେରି ଆସି ପୁଣି ପଥରକୁ ଉପରକୁ ନେବାକୁ ଚେଷ୍ଟା କରିବ ।

ମାନବର ଭାଗ୍ୟ ଏହିପରି, ପୂର୍ଣ୍ଣତାପାଇଁ ସେ ଅବିରାମ ଚେଷ୍ଟା କରିବ, କିନ୍ତୁ କେବେ ପୂର୍ଣ୍ଣତା ପାଇବ ନାହିଁ ।

ଭାରତୀୟ ଜୀବନ ଦର୍ଶନଠୁ ଆପାତତଃ ଏହି ପୂର୍ଣ୍ଣ ବିପରୀତ ମତ ମୋତେ ଆକୃଷ୍ଟ କରିଥିଲା । ଏହି ପୃଥିବୀରେ, ଏହି ଜନ୍ମରେ ମୁକ୍ତି ସମ୍ଭବ । ଭାରତୀୟମାନଙ୍କର ଏହି ବିଶ୍ୱାସ ସେମାନଙ୍କ କର୍ମଶୂନ୍ୟତା ପାଇଁ ଦାୟୀ ବୋଲି ଅନେକେ କହନ୍ତି । କ୍ୟାପ୍‌ଟେନଙ୍କ ମୁହଁ ପାଖରେ ବୃଦ୍ଧଙ୍କ ଶାନ୍ତ କମନୀୟ କରୁଣାମୟ ମୁହଁକୁ ଦେଖି ମୁଁ ଦୁଇଟି ଦେଶର ଜୀବନ ଦର୍ଶନ ଭିତରେ ଆକାଶ ପାତାଳ ବ୍ୟବଧାନ ରହିଥିବା କଥା ଅନୁମାନ କଲି ।

ଟି.ଭି. ଦେଖିବାର କେତେଦିନ ପରେ ବିଦେଶୀ ଛାତ୍ରଙ୍କ ସୁବିଧା ଅସୁବିଧା ବୁଝିବା ପାଇଁ ଅଭିପ୍ରେତ ଫ୍ରପ୍ ଅନୁଷ୍ଠାନର ଅଧ୍ୟକ୍ଷା ମିସେସ ଶଡ଼େଲ୍ ଦିନେ ମୋତେ ତାଙ୍କ ଅଫିସରେ ପଚାରିଲେ—ଆଜିକାଲି କେଉଁଠି ରହୁଛ ?

ସେତେବେଳେ ମୁଁ ମେଜର ଷ୍ଟ୍ରୀଟ୍‌ର ୧୮୫ ନମ୍ବର ଘରେ ରହୁଥାଏ । କାନାଡ଼ା ଯିବାର ଆରମ୍ଭରୁ ହିଁ ମୁଁ ସେ ଘରେ ରହିଥାଏ, ମାସକୁ ଅଶୀ ଡଲାର ଲେଖା ଭଡ଼ା । ପ୍ରଥମ ଫ୍ଲୋର୍‌ରେ ଅମେ ରହୁଥାଉ । ଖଟ, ଟେବୁଲ, ଚଉକି, ସବୁ ଥାଇ ଘରଟି । ସେଥିପାଇ ଘରେ ଫ୍ରିଜ୍ ଓ କୁକିଂ ରେଞ୍ଜ ବି ଥାଏ । ୟୁନିଭରସିଟିକୁ ଖୁବ୍ ପାଖ, ମୋଟେ ପାଞ୍ଚ ମିନିଟର ରାସ୍ତା । ସିଦ୍ଧାର୍ଥ ସ୍କୁଲକୁ ମଧ୍ୟ ପାଖ । ସେହି ଷ୍ଟ୍ରୀଟ୍ ଓ ତା ପାଖ ରବର୍ଟ ଷ୍ଟ୍ରୀଟ୍‌ରେ ବହୁ ଭାରତୀୟ ଓ ପାକିସ୍ଥାନୀ ଛାତ୍ରଛାତ୍ରୀମାନେ ରହୁଥାନ୍ତି । ଜାଗାଟା ଆମକୁ ବେଶ୍ ଅରେଇ ଯାଇଥିଲା । ଘରୁ ରାସ୍ତାକୁ ବାହାରି ପଡ଼ିଲେ ସଲଓ୍ୱାର ପଞ୍ଜାବୀ ପିନ୍ଧା ଚଣ୍ଡୀଗଡ଼ରୁ ଆସିଥିବା କାହାକୁ ଜଣକୁ ହେଉ, ନ ହେଲେ ମାଡ୍ରାସରୁ ଆସିଥିବା ହ୍ୟାଣ୍ଡଲୁମ୍ ଶାଢ଼ୀ ପିନ୍ଧା କେହି ଜଣେ ଅଖିରେ ନିଶ୍ଚୟ ପଡ଼ି ଯାଉଥିଲେ । ପ୍ରାୟ ଦୁଇବର୍ଷ ରହିବା ପରେ ଏହି ଘଟଣା । ମିସେସ୍ ଶଡ଼େଲଙ୍କୁ ମୁଁ ସବୁ କଥା କହିଲି, ସେ ତାଙ୍କ ଅଫିସ୍ ଚେୟାରଟା ଉପରେ ଅଉଜି ପଡ଼ି ମୋତେ ଭର୍ତ୍ସନା କରିବା ଦୃଷ୍ଟିରେ ଚାହିଁ କହିଲେ—ନାଁ, ନାଁ, ତୁମେ ଅଜଯାଏ ସେହି ଘରେ ଅଛ ବୋଲି ମୁଁ ଜାଣି ନ ଥିଲି । ଦୁଇବର୍ଷ କାଳ ସେହି ଘରେ ରହି ସାରିଲେଣି !!

ମୁଁ ତାଙ୍କ ପ୍ରଶ୍ନ ଓ ଭର୍ତ୍ସନାରେ ଆଶ୍ଚର୍ଯ୍ୟ ତ ହେଲି, କିଛିଟା ଅପମାନ ବି ଲାଗିଲା । ଘରଟି ମୋତେ ଖୁବ୍ ଭଲ ଲାଗୁଛି ବୋଲି ମୁଁ କହିଲି । କିନ୍ତୁ ସେ କହିଲେ —ଯେତେ ଭଲ ଲାଗିଲେ ବି ତୁମେ ଗୋଟାଏ ଜାଗାରେ ଏତେଦିନ ଧରି ରହିବା ଉଚିତ ନୁହେଁ । ସହରର ଆଉ କୌଣସି ଅଞ୍ଚଳକୁ ଯାଅ, ଦେଖ ହୁଏତ କୌଣସି ନୂଆ ଜାଗା ତୁମକୁ ଅଧିକା ଆନନ୍ଦ ଦେଇପାରେ ।

ମୁଁ ଯୁକ୍ତି ନ କରି ଫେରି ଆସିଲି । ତାଙ୍କ ଉପଦେଶ ମୂଳରେ ଗୋଟିଏ ନିର୍ଦ୍ଦିଷ୍ଟ ଜୀବନ ଦର୍ଶନ କାମ କରୁଥିବା ମୁଁ ଉପଲବ୍ଧି କରୁଥାଏ । ଯେହି ଦଶ ନ ହେଲି, ପରିବର୍ତ୍ତନ ଯାହା ହେଉ ପଛେ ବାଞ୍ଛନୀୟ । ଗୋଟାଏ ଜାଗାରେ ପଡ଼ି ରହିବା ବାର୍ଦ୍ଧକ୍ୟର ଲକ୍ଷଣ । ନିରାପତ୍ତା ନୁହେଁ—ନୂତନ ଅନୁଭୂତି, ନୂତନ ଆଡ଼ଭେଞ୍ଚର, ମଣିଷ ଖୋଜିବା ଉଚିତ । ମିସେସ୍ ରଡେଲ ପ୍ରୌଢ଼ା ହେଲେ ବି ଖୁବ୍ ସୁନ୍ଦର । ସ୍ୱାମୀ ତାଙ୍କର କିଛି ଗଣ୍ଡଗୋଳ ବେଳେ ନିହତ ହୋଇଥିଲେ ଇଉ. ଏନ୍. ଓ.ର ଅଫିସର ରୂପେ କାମ କରୁଥିବାବେଳେ । ସେହି ଦାରୁଣ ଘଟଣା ପରେ ବହୁ ଦୂରରୁ ଆସୁଥିବା ବିଦେଶୀ ଛାତ୍ରଙ୍କୁ କାନାଡ଼ା ବିଷୟରେ ବୁଝାଇବା, ସେମାନଙ୍କର ସମସ୍ୟାକୁ ସମାଧାନ କରିବା କାର୍ଯ୍ୟକୁ ବରଣ କରିନେଇ ମିସେସ୍ ରଡ଼େଲ୍ ସେହି ଦୁଃଖକୁ ଭୁଲି ଯିବାକୁ ଚେଷ୍ଟା କରୁଥିଲେ । ଯୁବତୀବେଳେ ସେ ଖୁବ୍ ସୁନ୍ଦର ହୋଇଥିବେ ବୋଲି ଆମେମାନେ ଅନେକ ସମୟରେ ତାଙ୍କ ଅନୁପସ୍ଥିତିରେ କଥାବାର୍ତ୍ତା ହେଉଥିଲୁ । ତାଙ୍କର କଥା ନା କାମ କଲା । ମୁ ତହିଁଆର ଦିନଠୁ ନୂତନ ଜାଗା ଖୋଜିବାରେ ଲାଗିଗଲି । ଶ୍ରୀମତୀ ମଧ୍ୟ ମିସେସ୍ ରଡେଲ୍‌ଙ୍କ କଥାକୁ ପୂର୍ଣ୍ଣ ସମର୍ଥନ କରି ନୂଆ ଘରଟିଏ ଖୋଜିବା ପାଇଁ ମୋତେ ଉତ୍ସାହିତ କଲେ । ତାର ଫଳ ହେଲା କିଛିଦିନ ପରେ ଆମେ ମେଜର ଷ୍ଟ୍ରିଟ୍ ଛାଡ଼ି ଯାଇ ରହିଲୁ ସୁଟର ଷ୍ଟ୍ରିଟରେ, ଅଣ୍ଟେରିଓ ଆପାର୍ଟମେଣ୍ଟ ବିଲଡ଼ିଂର ପନ୍ଦର ତାଲା ଉପରେ । ଆମର ସୁଇଟ୍ ନମ୍ବର ହେଲା ପନ୍ଦର ଶହ ଛଅ । ସେଠି ବର୍ଷେ ଉପରେ ରହିଲୁ । ବର୍ତ୍ତମାନ ଏକଥା ମୁଁ ନିଃସନ୍ଦେହ କରି କହିପାରେ ଯେ ସୁଟର ଷ୍ଟ୍ରିଟକୁ ଆସିବା ପରେ ଆମେ ଅଧିକ ସୁଖ ସ୍ୱଚ୍ଛନ୍ଦ୍ୟ ପାଇଥିଲୁ ଓ ଆମମାନଙ୍କର ଅନୁଭୂତିର ପରିସର ଅଧିକ ବଢ଼ି ଯାଇଥିଲା । ମେଜର୍ ଷ୍ଟ୍ରିଟରେ ରହିଥିଲେ ଆମେ ସେତିକ ପାଇ ପାରି ନଥାନ୍ତୁ ।

ଅବଶ୍ୟ କେଉଁ ସୀମା ଯାଏଁ ମଣିଷ ପରିବର୍ତ୍ତନ କରି କରି ଯିବ, ନୂତନର ଅନୁସନ୍ଧାନ କରୁଥିବ, ଆଉ କେଉଁଠି ନୂତନ ନୁହେଁ ପୁରାତନତାକୁ ଭି ଆଦରିବା ଠିକ୍ ହେବ, ସେଇଟାର ବ୍ୟବଧାନ ରେଖା ସେମାନେ ସବୁବେଳେ ଠିକ୍ ଭାବୁଥିଲେ ବୋଲି ମୁଁ କହୁନାହିଁ । ସେଇ ଫ୍ରସ୍ ବିଲଡ଼ିଂରେ କୌଣସି ରବିବାରର ସନ୍ଧ୍ୟାରେ ଗେଷ୍ଟଲ୍ୟାନ୍‌ମାନଙ୍କ ସହିତ ମିଶିବାପାଇଁ ଆମମାନଙ୍କୁ ଥରେ ମିସେସ୍ ରଡେଲ୍ ନିମନ୍ତ୍ରଣ କରିଥା'ନ୍ତି । ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାଙ୍କ ସଂଖ୍ୟା ଦୃଷ୍ଟିରୁ ଫ୍ରସ୍‌ର ଗୃହଟି ଛୋଟିଆ ଜଣା ପଡ଼ୁଥାଏ । ଟିକିଏ ଅସାବଧାନ ହୋଇ ପଶିଲେ କୌଣସି ଭଦ୍ର-ମହିଳାଙ୍କ ଦେହରେ ଦେହ ବାଜିବ, ନହେଲେ କାହାର ଯୋତା ଚକଟି ହୋଇଯିବ । କିଏ କିଏ କଫି ସହିତ ବିସ୍କୁଟ ଖାଉ ଥାଆନ୍ତି, ଆଉ କେହି କେହି କଫି ସହିତ କେକ୍ । ପାଖ ରୁମ୍‌ରେ କେହି ଜଣେ ରେଡ଼ିଓଗ୍ରାମରେ ଆଫ୍ରିକୀୟ ସଙ୍ଗୀତର ରେକର୍ଡ଼ ଲଗାଇ

ସାରିଥାଏ । ଏହି ସମୟରେ ମୋତେ ଗୃହିଣୀ ଜଣେ ପ୍ରୌଢ଼ା ପଚାରିଲେ—ଆପଣ ନିଶ୍ଚୟ ହିନ୍ଦୁ ? ସେ ମୋତେ ହିନ୍ଦୁ ବୋଲି ଜାଣିପାରିଲେ ଭାବି ମୁଁ ଖୁବ୍ ଖୁସୀ ହେଲି । ତା' ପରେ ପରେ କିନ୍ତୁ ସେ ମୋତେ ପଚାରିଲେ—ସବୁଦିନେ କଣ ଆପଣ ହିନ୍ଦୁ ହୋଇ ରହିଥିବେ ? ମୁଁ ସେ ପ୍ରଶ୍ନ ଶୁଣି ପ୍ରଥମେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲି । ସମ୍ଭାଳି ଯାଇ କହିଲି—ଆଜ୍ଞା କଣ ଲିପଷ୍ଟିକ ପରି ଧର୍ମକୁ ପ୍ରତିଦିନ ପ୍ରତି ଅକେଜନରେ ବଦଳାଯାଏ କି ? ମୋର ଉତ୍ତର ଶୁଣି ସେ ନିଷ୍ପ୍ରଭ ହୋଇଗଲେ; କିନ୍ତୁ ବୁଝିଲି, ପରିବର୍ତ୍ତନକୁ ସମର୍ଥନ କରୁ କରୁ ସେ ଅଜାଣତରେ ବ୍ୟବଧାନର ସୀମାରେଖାକୁ ଲଂଘନ କରି ଯାଇଛନ୍ତି ।

କଥା ହେଲା, ସର୍ବଦା ସବୁ ସମୟରେ ସେହି ଦେଶର ଲୋକେ ନୂତନର ଅନୁସନ୍ଧାନରେ ବ୍ୟାକୁଳ । ସାହିତ୍ୟ, କଳା, ଦର୍ଶନ, ବିଜ୍ଞାନରେ ନୂତନ ଦିଗନ୍ତ ଆବିଷ୍କାର କରିବା ସେମାନଙ୍କର ବ୍ରତ ପରି ମନେ ହେଲା । ସେଥିପାଇଁ ନୂତନ ନୂତନ ପରୀକ୍ଷା ନିରୀକ୍ଷା ସବୁ ଜିନିଷରେ । କୌଣସି ପରୀକ୍ଷା ପରେ କୌଣସି ଖୁବ୍ ଭଲ ଜିନିଷ ପାଇଗଲେ ବି ତାହା ଯେ ସବୁ ସମୟ ପାଇଁ ବିଶ୍ରାମସ୍ଥଳୀ, ତା'ପରେ ଯେ ଆଉ ଅଗ୍ରଗତି ନାହିଁ, ସେ କଥାରେ ସେମାନେ ବିଶ୍ୱାସ କରନ୍ତି ନାହିଁ; କିନ୍ତୁ ଭାରତରେ ଲୋକେ ଭାବନ୍ତି, ସବୁ କ୍ଷେତ୍ରରେ ମଣିଷ ପୂର୍ଣ୍ଣତା ପାଇପାରିବ, ଆଉ ଭାରତରେ ସେହି ପୂର୍ଣ୍ଣତା ପୂର୍ବର ମୁନିଋଷିମାନେ ପାଇ ସାରିଛନ୍ତି । ତେଣୁ ଆଉ ବ୍ୟସ୍ତ ହେବା, ନୂତନତାର ଅଭିଳାଷ ନେଇ ବୁଲିବା ନିଷ୍ପ୍ରୟୋଜନ । ସେଇଥିପାଇଁ ସେଠି ପୂର୍ବ ସୂରୀଙ୍କର ଆଦର ଅଛି, କିନ୍ତୁ ସେହି ଆଦର ଲୋକଙ୍କ କର୍ମଣ୍ୟତାରେ ପ୍ରତିବନ୍ଧକ ହୁଏ ନାହିଁ । ତରୁଣ ସବୁବେଳେ କହେ ମୁଁ ମଧ୍ୟ କିଛି ନୂଆ ଜିନିଷ କରିବି, କିଛି ବଡ଼ ଜିନିଷ କରିବି । ପୁରୁଣା ଲୋକଙ୍କ ସବୁ କଥା ଠିକ୍, ସେମାନେ ଯାହା ଯାହା କରି ଯାଇଛନ୍ତି ତାହା ସବୁ ଅଭ୍ରାନ୍ତ ଓ ଆଉ କିଛି ନୂତନ ଓ ମୂଲ୍ୟବାନ କଥା କରିବାକୁ ନାହିଁ, ଏପରି ନୁହେଁ । ଟରେଣ୍ଟୋର ୟର୍କ ଭିଲେଜ୍‌କୁ ମୁଁ ବହୁବାର ଯାଇଛି । ଅନ୍ୟାନ୍ୟ ସହରରୁ ବନ୍ଧୁ ଆସିଲେ ସେମାନଙ୍କୁ ଧରି ୟର୍କ ଭିଲେଜ୍‌କୁ ବୁଲାଇବାକୁ ନେଇଯାଏ । ୟର୍କ୍ ଭିଲେଜ୍ ହିପ୍‌ପି ଯୁବକ ଯୁବତୀଙ୍କ ଆଡ୍ଡା ସ୍ଥଳୀ । ସେହି ଗଳିରେ ଅନ୍ୟ କେଉଁଠି ମିଳୁ ନ ଥିବା ଜିନିଷ ମିଳେ—ଯଥା ଡିଜାଇନ୍ କରା ହୋଇଥିବା ପଞ୍ଜାବୀ ଓ ମୋଟା ଧଡ଼ିଥିବା ଧୋତି । ଦୋକାନ ଉପରେ ଘରଗୁଡ଼ିକରେ ପ୍ରଚଳିତ ସମାଜର ବ୍ୟବସ୍ଥା ପ୍ରତି ବିମୁଖ ତରୁଣ ତରୁଣୀ ଆସି ରହନ୍ତି । ମାରିଯ୍ୱାନାକୁ ସିଗାରେଟ୍‌ରେ ପୁରାଇ ଖାଆନ୍ତି । ସେହି ଗଳିରେ ବୁଲିଗଲେ ବହୁ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳେ । ଟରେଣ୍ଟୋ ବିଶ୍ୱବିଦ୍ୟାଳୟ ନିୟମ ଅନୁଯାୟୀ, ରିସର୍ଚ୍ଚ ଆରମ୍ଭ କରିବା ପୂର୍ବରୁ, ଦର୍ଶନ ଛଡ଼ା ଅନ୍ୟ ଏକ ବିଷୟରେ ଏମ୍. ଏ. ଷ୍ଟାଣ୍ଡାର୍ଡର ଏକ କୋର୍ସ ନେଇ ମୋର ପାସ୍ କରିବାର କଥା । ମୁଁ ନେଇଥିଲି ମଡ଼ର୍ଣ୍ଣ ପଲିଟିକାଲ୍ ଥଟ୍ । ସେହି ସମୟରେ ମୋ କ୍ଲାସ୍‌ର ଜଣେ

ଇହୁଦୀ ତରୁଣୀ ପଢ଼ୁଥିଲେ । ଦେଖିବାକୁ ସେତେ ସୁନ୍ଦର ନୁହଁନ୍ତି, କିନ୍ତୁ ଖୁବ୍ ମେଳାପୀ । ଦିନେ କଥା ଛଳରେ ମୁଁ ପଚାରିଲି—ଟରଣ୍ଟୋରେ କେଉଁଠି ରହୁଛ ? ସେ ଅତି ସ୍ୱାଭାବିକ ଢଙ୍ଗରେ କହିଲେ—ୟର୍କ ଭିଲେଜ୍ ! ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି—ତୁମେ କ'ଣ ବିଟ୍‌ନିକ୍, ହିପ୍ପି ?

ମୁଁ ହିପ୍ପି ନୁହେଁ, କିନ୍ତୁ ହିପ୍ପି ଭିଲେଜ୍‌ରେ ରହି ସେମାନଙ୍କର ଜୀବନକୁ ନିକଟରୁ ଦେଖିବାକୁ ଭଲପାଏ, ସେମାନଙ୍କ ସହ କିଛିଟା ନିଜକୁ ମିଶାଇ ଦେବାକୁ ଭଲପାଏ; କାରଣ, ସହରର ସେହି ଗୋଟିଏ ଜାଗା ଯେଉଁଠି ତୁମେ କିଛି ସ୍ୱତନ୍ତ୍ରତା, କିଛି ବିଶେଷତା ଦେଖିବ । ନ ହେଲେ ଅନ୍ୟ ସବୁ ସହର ପରି ଟରଣ୍ଟୋ ସହର ନୁହେଁ କି ?

ମୁଁ ହୁଁ କଲି । ସ୍ୱତନ୍ତ୍ରତା, ସ୍ୱାଧୀନତା ଓ ନୂତନତା ପାଇବା ପାଇଁ କିଛି ନୂଆ କଥା ଅନୁଭବ କରିବା ପାଇଁ ଉଦ୍‌ଗ୍ରୀବ ସେହି ଇହୁଦୀ ତରୁଣୀଙ୍କ ପ୍ରତି ମନରେ ମୋର ଶ୍ରଦ୍ଧା ଆସିଲା ।



# ଧର୍ମ କ'ଣ ଆଜି ପ୍ରଭାବହୀନ ?

କିଛୁଦିନ ତଳେ ସମ୍ବାଦ ପ୍ରକାଶ ପାଇଥିଲି ଯେ ( ଷ୍ଟେଟସ୍‌ମାନ ଜୁଲାଇ ୩୧ ତାରିଖ ) କାନାଡ଼ାର ତିନିଜଣ ଖ୍ରୀଷ୍ଟିୟାନ ଧର୍ମ ପ୍ରଚାରକଙ୍କୁ ଭାରତ ସରକାର ଦେଶରୁ ବାହାର ଯିବାକୁ ଆଦେଶ ଦେଇଛନ୍ତି । ସମ୍ବାଦଟି ପଢ଼ିବା ପରେ ପରେ ମୁଁ କାନାଡ଼ାରେ ଏହି ଘଟଣାର କ'ଣ ପ୍ରତିକ୍ରିୟା ହେବ ଅନୁମାନ କରିନେଲି । ଟରଣ୍ଟୋର ବିଶିଷ୍ଟ ଖବରକାଗଜ "ଗ୍ଲୋବ୍ ଏଣ୍ଡ ମେଲ"ରେ ନିଶ୍ଚୟ ବାହାରିବ ଯେ ଭାରତ ତାର ଧର୍ମବିଧାନରେ ନିଜକୁ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ବୋଲି ଘୋଷଣା କଲେ ମଧ୍ୟ କାର୍ଯ୍ୟରେ ତାହା ହିନ୍ଦୁଧର୍ମର ପକ୍ଷପାତୀ । ସେଥିରେ ଏକଥା ମଧ୍ୟ ଉଲ୍ଲେଖ ରହିବ ଯେ କାନାଡ଼ା ଭାରତକୁ ଏତେ ଆର୍ଥିକ ସାହାଯ୍ୟ, ଏତେ ଖାଦ୍ୟ ସାହାଯ୍ୟ ଦେଉଥିବା ସତ୍ତ୍ୱେ ଭାରତ କାନାଡ଼ାର ପ୍ରଚାରକମାନଙ୍କୁ ଏପରି ଅବମାନନା କରିବା ନିହାତି କ୍ଷୋଭର କଥା, ଇତ୍ୟାଦି । କାନାଡ଼ାରେ ଥିବାବେଳେ ଏହିପରି ଭାରତ ବିରୋଧୀ ସମ୍ବାଦ ବହୁବାର, ବହୁ ଖବରକାଗଜରେ ପ୍ରକାଶିତ ହୋଇଛି ଓ ଆମେ କେତେଜଣ ଗ୍ରାହକ ନିୟମିତ ଏହି ସବୁ ସମ୍ବାଦ ବା ସମ୍ପାଦକୀୟ ଲେଖାର ପ୍ରତିବାଦ କରୁଥିଲୁ । ହୁଏତ ଏଥରକ ଖୁବ୍ ନିକଟରେ ଫ୍ରାନ୍ସର ରୋମାନ କ୍ୟାଥଲିକ୍ ଧର୍ମାବଲମ୍ବୀ ଲୋକଙ୍କୁ କାନାଡ଼ା ବିରୁଦ୍ଧରେ ସେ ଲୋକଙ୍କୁ ମତାଉଥିବା ଦୃଷ୍ଟିରୁ ତାଙ୍କୁ କ୍ୟୁବେକରୁ ତଡ଼ିବା ଓ ଭାରତ କାନାଡ଼ିଆନ୍ ପାଦ୍ରୀମାନଙ୍କୁ ଆସାମରୁ ତଡ଼ିବା କାର୍ଯ୍ୟ ପ୍ରାୟ ସମାନ ହୋଇଥିବାରୁ କାନାଡ଼ାର ଖବରକାଗଜ ଚୁପ୍ ହୋଇ ରହିଯାଇ ପାରନ୍ତି; କିନ୍ତୁ ସେମାନଙ୍କ ମନ ଭିତରର କଥା ଏଥିରୁ ଅଛପା ରହିବା ଉଚିତ ନୁହେଁ ।

ଧର୍ମ, ରାଜନୀତି, ସଂସ୍କୃତି—ଏହି ସବୁ କଥା ଏକ କି ବିଭିନ୍ନ ଏହି ସମ୍ପର୍କରେ ଆଲୋଚନା ନ କରି ମୁଁ ଏହି ସବୁ ପ୍ରତ୍ୟୟ ଯେଉଁ ସାଧାରଣ କଥାକୁ ବୁଝାନ୍ତି, ତାହାର ପ୍ରଭାବ ନେଇ ଆଲୋଚନା କରିବି । ଏତିକି, ଧର୍ମଠୁ ବହୁ ଅନ୍ଧ ବିଶ୍ୱାସକୁ ମୁଁ ଅଲଗା କରି ରଖୁଛି, ଯଦିଓ ସାଧାରଣ ଲୋକଙ୍କପାଇଁ ଅନେକ କ୍ଷେତ୍ରରେ ଧର୍ମ ଓ ଅନ୍ଧ ବିଶ୍ୱାସ ଅଭିନ୍ନ । କାନାଡ଼ାରୁ ଫେରି କଲିକତା ପହଞ୍ଚିବା ଦିନ ହାଉଡ଼ାରେ ଫାଷ୍ଟକ୍ଲାସ୍ ଓ୍ୱେଟିଂରୁମରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି

ଡଃ ସଦାଶିବ ମିଶ୍ରଙ୍କ ଆକସ୍ମିକ ଭାବେ ଭେଟିଲି । କିଛି ସମୟ ଏଣୁତେଣୁ କଥାବାର୍ତ୍ତା ହେବା ପରେ ଭାରତର ଉନ୍ନତି କାହିଁକି ହେଉନାହିଁ, ଏ ସମ୍ବନ୍ଧରେ କଥା ପଡ଼ିଥିଲା । ସେହି ପ୍ରସଙ୍ଗରେ ସେ କଲିକତାର କେତେକ ହିନ୍ଦୁଙ୍କର "ଖଟମଲ ଧର୍ମ" କଥା କହିଥିଲେ । କୁଆଡ଼େ କ୍ଷୁଧିତ ଓଡ଼ଶ ଥିବା ଖଟଟିଏ ଧରି ଲୋକଟିଏ ବଡ଼ ବଜାରରେ ବୁଲୁଥାଏ । ଦୟାଦ୍ର୍ର ମାରୱାଡ଼ିମାନେ ଧର୍ମାର୍ଜନ ପାଇଁ ପଇସା ଦେଲେ ସେ ଲୋକଟି ସେହି ଖଟ ଉପରେ ପଇସାର ପରିମାଣ ନେଇ କମ୍ ବା ବେଶି ସମୟ ଶୋଇ ଓଡ଼ଶଙ୍କୁ ନିଜର ରକ୍ତ ଖୁଆଏ । ପଇସା ଦେଇଥିବା ଦାତା ଦେହ୍ୱାରା ପୁଣ୍ୟ ଲାଭ କରିଥାଆନ୍ତି । ଅଧୁନିକ ସମାଜରେ ଏହି ସବୁ କୁସଂସ୍କାର ଓ ଅନ୍ଧବିଶ୍ୱାସର ପ୍ରଭାବ କଥା ମୁଁ ଆଲୋଚନା କରିବାକୁ ଯାଉନାହିଁ । ମୁଁ କେବଳ ଧର୍ମର ପ୍ରଭାବଶାଳିତା କଥା ଆଲୋଚନା କରିବ ।

ଭାରତରେ ଥିବାବେଳେ ଧର୍ମକୁ ଏକ ମୃତ ବା ଅର୍ଦ୍ଧମୃତ କଥା ବୋଲି ଭାବିବା ବହୁ ଶିକ୍ଷିତ ଲୋକଙ୍କ ପାଇଁ ଫେସନ ହୋଇ ପଡ଼ିଥିଲା ବୋଲି ମୁଁ ଜାଣେ । ସେମାନଙ୍କ ସମ୍ପର୍କରେ ଆସି ମୁଁ ଭାବୁଥିଲି, କାନାଡ଼ା ଓ ଆମେରିକା ଗଲେ, ବିଜ୍ଞାନର ବିପୁଳ ବିଜୟ ଛଡ଼ା କୌଣସି ଧର୍ମର ପ୍ରଚାର ବା ପ୍ରଭାବ ଦେଖିବାକୁ ମିଳିବ ନାହିଁ; କିନ୍ତୁ ପ୍ରାୟ ଚାରିବର୍ଷର ରହଣି ଭିତରେ ମୋର ଅନୁଭୂତି ପରିସରକୁ ଏପରି କେତୋଟି କଥା ଆସିଲା, ଯାହା ଧର୍ମ ବା ରିଲିଜିଏନକୁ ପ୍ରଭାବଶୂନ୍ୟ ବୋଲି ମନେ କରୁଥିବା ମୋର ବନ୍ଧୁମାନଙ୍କୁ ମୁଁ କହିବା କର୍ତ୍ତବ୍ୟ ମନେ କରୁଛି । ତେଣିକି ସେମାନେ ମୋ ସହିତ ଏକମତ ହୋଇ ହିନ୍ଦୁଧର୍ମର ମହତ୍ତ୍ୱ ବୃଦ୍ଧି, ଦେବଲୁଯାସ୍ତୀ କାର୍ଯ୍ୟ କରିବେ ବା କମ୍ୟୁନିଷ୍ଟମାନଙ୍କ ସହିତ ଏକମତ ହୋଇ ସଂସାରରୁ ସମସ୍ତ ଧର୍ମ ଲୋପ ପାଉ ଏହି ସିଦ୍ଧାନ୍ତରେ ବା ଅନ୍ୟ କୌଣସି ସିଦ୍ଧାନ୍ତରେ ପହଞ୍ଚିବେ, ତାହା ସେମାନଙ୍କର ବିଚାର ଓ ଦାୟିତ୍ୱର କଥା ।

ଟରଣ୍ଟୋର ମେଜର ଷ୍ଟ୍ରିଟର ୧୮୫ ନମ୍ବର ଘରେ ରହିବାର ଅଳ୍ପ କେତେ ଦିନ ପରେ, ଦିନେ ସକାଳେ, ଆମ କବାଟକୁ ଆସି କେହି କରାଘାତ କଲା । ସେଦିନ ରବିବାର ବୋଲି ମୁଁ ଡେରିରେ ଉଠିଥାଏ । ଶ୍ରୀମତୀ ରୋଷେଇରେ କାର୍ଯ୍ୟ ବ୍ୟସ୍ତ । କବାଟରେ ଠକ୍ ଠକ୍ ଶୁଣି ସିଦ୍ଧାର୍ଥ ଯାଇ ଦୁଆର ଖୋଲିଲା । ସେମାନଙ୍କ କଥାରୁ ସେ କ'ଣ ବୁଝିଲା ନ ବୁଝିଲା କେଜାଣି, ମୋତେ ଦଉଡ଼ି ଆସି ଖବର ଦେଲା, ଦୁଇଜଣ ଭଦ୍ରମହିଳା ମୋତେ ଡାକୁଛନ୍ତି । ମୁଁ ଯାଇ ସେମାନଙ୍କୁ ଭେଟିଲି । ଦୁଇଜଣ ପ୍ରୌଢ଼ା ଭଦ୍ରମହିଳା । ଦୁହିଁଙ୍କ ହାତରେ ବହି, ମ୍ୟାଗାଜିନ ଇତ୍ୟାଦି । କାନ୍ଧରେ ବ୍ୟାଗ୍ । ସେମାନେ ସେହି ମ୍ୟାଗାଜିନଗୁଡ଼ିକରୁ ମୋତେ ଦୁଇଟି କିଣିବାକୁ କହିଲେ । ମୁଁ ଗୋଟିଏ ମ୍ୟାଗାଜିନ ଆଣି ଦେଖିଲି, ଖ୍ରୀଷ୍ଟିୟାନଧର୍ମୀ କେହୋଭା

ଉଇଟନେସ ସମ୍ପ୍ରଦାୟର ଧର୍ମ ପ୍ରଚାରମୂଳକ ପତ୍ରିକାଟିଏ । ସେତେବେଳେ ମୁଁ ଜାଣି ନ ଥିଲି ଯେ ଏହି ଧର୍ମ ପ୍ରଚାରକ ଦଳ ଅନ୍ୟାନ୍ୟ ଖ୍ରୀଷ୍ଟିୟାନ ଦଳଠାରୁ ଭିନ୍ନ ଓ ସେମାନଙ୍କ ମତବାଦରେ ସ୍ୱାତନ୍ତ୍ର୍ୟ ଅଛି । ତେବେ ଆମମାନଙ୍କର ପରବର୍ତ୍ତୀ କଥୋପକଥନ ସେମାନଙ୍କର ଜେହୋଭାଙ୍କ ଉଇଟନେସ୍ ମତ ନେଇ ଚାଲି ନ ଥିଲା । ତର୍କ ଆରମ୍ଭ ହୋଇଥିଲା ମୁଁ ଜଣେ ହିନ୍ଦୁ ଓ ସେମାନେ ଖ୍ରୀଷ୍ଟିୟାନ୍ ହିସାବରେ । ମୁଁ ମ୍ୟାଗାଜିନଟିକୁ ଓଲଟାଇ ସାରା ସେଇଟି ଖୁବ୍ ନିମ୍ନସ୍ତରୀୟ ହୋଇଛି ଓ ମୋ'ପାଇଁ ସେଥିରେ କିଛି ପଠନୀୟ ବସ୍ତୁ ନାହିଁ ବୋଲି କହି ଫେରାଇ ଦେଲି । ସେଇଠୁ ସେମାନେ ମୋର ମୁହଁ ଓ ଗଢ଼ଣକୁ ନିରେଖି, ମୋର ଇଂରାଜୀ ଉଚ୍ଚାରଣ ଢଙ୍ଗ ଶୁଣି ହେଉ ବା ଦୂରରେ ମୋର ଧର୍ମପତ୍ନୀଙ୍କ ସିନ୍ଦୂର ଓ ଶାଢ଼ୀ ଦେଖି ହେଉ, ସନ୍ଦେହାନ୍ୱିତ ହୋଇ ପଚାରିଲେ—ଆପଣ କେଉଁ ଧର୍ମାବଲମ୍ବୀ ?

ମୁଁ ହିନ୍ଦୁ ବୋଲି ନିଜର ପରିଚୟ ଦେଲି । ସେମାନେ ସେଥିରୁ କ'ଣ ବୁଝିଲେ କେଜାଣି, ପୁଣି ପଚାରିଲେ—ଆପଣ ବାଇବେଲ ନିୟମିତ ପଢ଼ନ୍ତି ?

ମୁଁ ନାହିଁ କଲି । ସେମାନଙ୍କ ମଧ୍ୟରୁ ଜଣେ ତତ୍କ୍ଷଣାତ ତାଙ୍କର ବ୍ୟାଗରୁ ବାଇବେଲଟିଏ ବାହାର କରି ମୋ ଆଡ଼କୁ ବଢ଼ାଇ ଦେଇ କହିଲେ—ଇଶ୍ୱରଙ୍କ ବାଣୀ ଏଥିରେ ଅଛି । ଏହାକୁ ପ୍ରତ୍ୟେକ ଲୋକ ପ୍ରତ୍ୟହ ପଢ଼ିବା ଉଚିତ ।

ମୁଁ ବାଇବେଲ ପଢ଼େନାହିଁ ଓ ମୋ ପାଇଁ ବାଇବେଲ ପଢ଼ିବା ଦରକାର ନାହିଁ ବୋଲି ସୂଚାଇ ମୁଣ୍ଡ ହଲାଇଲି । ମୋତେ ଲାଗିଲା ଯେ ଦୁର୍ଭାଗ୍ୟ ଯୋଗୁଁ ସକାଳୁ ସକାଳୁ, ଦୁଇଜଣ ଧର୍ମପାଗଳୀଙ୍କ ହାବୁଡ଼ରେ ପଡ଼ିଛି । ସକାଳୁ ସକାଳୁ ଯେ ମୋତେ ଏମାନେ ତର୍କ ଆଡ଼କୁ ଟାଣୁଛନ୍ତି ଦେଖି ମନେ ମନେ ରାଗିଲି ମଧ୍ୟ । ଇଚ୍ଛାହେଲା ବର୍ତ୍ତମାନ ମୁଁ କାର୍ଯ୍ୟବ୍ୟସ୍ତ କହି, ଦୁଆର ବନ୍ଦକରି ଚାଲି ଆସିବି; କିନ୍ତୁ ସୌଜନ୍ୟ ଦେଖାଇ ଠିଆ ହୋଇ ରହିଲି ଓ ସେମାନଙ୍କ ଯୁକ୍ତିକୁ କପରି ଜଳଦି ଖଣ୍ଡନ କରାଯାଇ ପାରିବ, ସେହି କଥା ଚିନ୍ତା କଲି । ହଠାତ୍ ମୋର ପାଖରେ ଥିବା ଓଡ଼ିଆ ଗୀତା କଥା ମୋର ମନେ ପଡ଼ିଗଲା । ମୁଁ ସେମାନଙ୍କୁ କ୍ଷମାମାଗି, ଅପେକ୍ଷା କରିବାକୁ କହି, ଘର ଭିତରକୁ ଯାଇ ଗୀତା ଖଣ୍ଡିକ ଆଣିଲି । ସେମାନେ ମୋ ହାତରେ ଛୋଟିଆ ବହିଟିଏ ଦେଖି ଆଶ୍ଚର୍ଯ୍ୟ ହେଉଥାନ୍ତି । ମୁଁ କହିଲି—ଇଶ୍ୱରଙ୍କ ବାଣୀ ଏହି ବହିଟିରେ ଅଛି । ଏଇଟିକୁ ନିୟମିତ ପଢ଼ିବା ସମସ୍ତଙ୍କର କର୍ତ୍ତବ୍ୟ ।

ସେମାନେ ପଚାରିଲେ—ସେଇଟା କ'ଣ ବାଇବେଲ ?

ମୁଁ କହିଲି—ଆପଣ ଧରିଥିବା ବହିଟି କ'ଣ ଗୀତା ?

ସେମାନେ ପୁଣି ପଚାରିଲେ—ସେଥିରେ ଈଶ୍ୱରଙ୍କର ପୁତ୍ର ଯୀଶୁଖ୍ରୀଷ୍ଟଙ୍କ ବାଣୀ ଅଛି ?

ମୁଁ ଓଲଟା ପ୍ରଶ୍ନ କଲି—ଆପଣ ଧରିଥିବା ବହିଟିରେ ପରମେଶ୍ୱର ଶ୍ରୀକୃଷ୍ଣଙ୍କର ବାଣୀ ଅଛି ?

ଭଦ୍ରମହିଳା ଦୁଇଜଣ, ଯୁକ୍ତି କେଉଁ ଆଡ଼କୁ ଯାଉଛି ବୁଝିପାରି କ'ଣ ଆଉ କହିବେ କିଛି ଭାବି ପାରିଲେ ନାହିଁ । ମୁହୂର୍ତ୍ତେ କେତୋଟି ପରେ ମୁଁ ସେମାନଙ୍କୁ ଧୈର୍ଯ୍ୟ ଦେବାପାଇଁ କହିଲି—ପୃଥିବୀରେ ବହୁତ ଧର୍ମ ଅଛି, ସେଥିରୁ ହିନ୍ଦୁ ଧର୍ମ ସବୁ ପ୍ରାଚୀନ । ସେହି ଧର୍ମାବଲମ୍ବୀ ଲୋକେ ଭାରତରେ ରହନ୍ତି । ମୋର ସେହି ଧର୍ମ । ମୋର ଧର୍ମ ଅନୁଯାୟୀ ଗୀତା ପରମ ପବିତ୍ର ଗ୍ରନ୍ଥ ଓ ଶ୍ରୀକୃଷ୍ଣ ସ୍ୱୟଂ ପରମେଶ୍ୱର । ମୋର ଧର୍ମ ଏକଥା ମଧ୍ୟ କହେ ଯେ ଅନ୍ୟ ଧର୍ମାବଲମ୍ବୀ ଲୋକଙ୍କୁ ନିଜର ଧର୍ମ ଭିତରକୁ ଆଣିବା ଅପେକ୍ଷା, ସେହି ଧର୍ମରେ ଯଦି ସେ ବ୍ୟକ୍ତି ପ୍ରକୃତ ବିଶ୍ୱାସୀ ହୋଇ ସଦାଚାରୀ ହୁଅନ୍ତି, ତାହାହେଲେ ସେଇଟା ଶ୍ରେୟସ୍କର, କାରଣ ସବୁ ଧର୍ମର ସେହି ଗୋଟିଏ ଲକ୍ଷ୍ୟ—ସେହି ଏକ ଭଗବାନ୍ ।

ଭଦ୍ରମହିଳା ଦୁଇଜଣଙ୍କୁ ମୋର କଥା ବିଲ୍‌କୁଲ୍ ନୂଆ ଲାଗିଲା । ସେମାନେ କହିଲେ—ସେହି ଭଗବାନ ହେଉଛନ୍ତି ଯୀଶୁ । ମୁଁ କହିଲି—ସେହି ଭଗବାନ ଶ୍ରୀକୃଷ୍ଣ ମଧ୍ୟ !

ମୋ କଥାରେ ନିହାତି ଅସନ୍ତୁଷ୍ଟା ହୋଇ ଭଦ୍ର ମହିଳା ଦୁଇଜଣ ଚାଲିଗଲେ । ମେଜର କ୍ରିସେଣ୍ଟ୍ ଗଛଗୁଡ଼ାକରେ ବହୁତ ରଙ୍ଗର ଥିବା ପତ୍ରଗୁଡ଼ାକୁ ଚାହିଁଲି । ସାରା ଷ୍ଟ୍ରୀଟଟା ରଙ୍ଗବେରଙ୍ଗ ପତ୍ରରେ ଭର୍ତ୍ତି । ସେତେବେଳେ କାନାଡ଼ାର ଫଲ୍ ବା ପତ୍ରଝଡ଼ା ସିଜନ । ରାସ୍ତାର ଡାହାଣ କଡ଼ରେ ପାର୍କିଂ କରାଯାଇଥିବା କାରଗୁଡ଼ାକ ମଝିରେ ପିଲାମାନେ ଦଉଡ଼ାଦଉଡ଼ି ଖେଳୁଥାନ୍ତି । ମୁଁ ଦୁଆର ବନ୍ଦ କରି ଘର ଭିତରକୁ ଆସିଲି ।

ପରେ ବିଶ୍ୱବିଦ୍ୟାଳୟରେ ବନ୍ଧୁମାନଙ୍କ ସହ କଥାବାର୍ତ୍ତା ହେଉ ହେଉ ଜାଣିଲି ଯେ ଏହି "ଜେହୋଭା ସାକ୍ଷୀ" ଦଳ କେବଳ ଭିନ୍ନ ଧର୍ମୀ ନୁହେଁ; ଅନ୍ୟ ଖ୍ରିଷ୍ଟିୟାନ୍ ସମ୍ପ୍ରଦାୟର ଲୋକଙ୍କୁ ମଧ୍ୟ ବେଳ ଅବେଳରେ ଯୁକ୍ତି କରିବାକୁ ଡାକି ହଇରାଣ କରିଥାନ୍ତି । ଏହି କଥା ନେଇ ଆମେରିକାରେ ଗୋଟିଏ ସୁପ୍ରସିଦ୍ଧ କେସ୍ ହୋଇଯାଇଛି, ଯେଉଁଥିରେ ବିଚାରପତିମାନେ ରାୟ ଦେଇଛନ୍ତି ଯେ ଧର୍ମ ପ୍ରଚାର କରିବାର ଅଧିକାର ସମସ୍ତଙ୍କର ଥିଲେ ମଧ୍ୟ ଧର୍ମ ପ୍ରଚାର ନାମରେ ଜଣେ ଲୋକକୁ ଘର ଭିତରୁ ତର୍କ ପାଇଁ ଡାକି ଆଣି ତାକୁ ଅଶାନ୍ତ କରିବାର ଅଧିକାର କାହାର

ନାହିଁ । ସେତେବେଳେ ମୁଁ ଭାବିଲି, ଭାରତରେ ଏପରି କୌଣସି କେମ୍ ହୋଇନାହିଁ, କାରଣ ଧର୍ମପ୍ରଚାରକମାନଙ୍କଦ୍ୱାରା ବ୍ୟତିବ୍ୟସ୍ତ ଅଶାନ୍ତ ହେଉଥିବା ଲୋକେ ଖୁବ୍ ଦରିଦ୍ର ଓ ଅଶିକ୍ଷିତ ଶ୍ରେଣୀର ।

ମୁଁ ଏହି ଜେହୋଭା ସାକ୍ଷୀ ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଲୋକଙ୍କୁ ଅଦ୍ଭୁତ ଅନେକ ଥର ଭେଟିଛି, ସବୁବେଳେ ସେହିମାନଙ୍କ ଦମ୍ଭାରୁ ଯୁକ୍ତିତର୍କ ବହୁ ଅଂଶର ପ୍ରକାର ନେଇଛି ବିଭିନ୍ନ ସମୟରେ । ସେମାନେ କେବେ କେବେ ବାଇବେଲରେ ଲିଖିତ ନମରଡ଼ ସମ୍ରାଟର ଐତିହାସିକତା ପ୍ରତିପାଦନ କରିବାକୁ ଚାହିଁଛନ୍ତି, ଅଥ କେବେ ଆସୁଥିବା ପ୍ରଳୟର ସୂଚନା ଦେଇଛନ୍ତି, ଆଉ କେବେ କହିଛନ୍ତି, କେବଳ ସଦାଚାର ମଣିଷର ମୁକ୍ତିପାଇଁ ଯଥେଷ୍ଟ ନୁହେଁ, ଯୀଶୁଖ୍ରୀଷ୍ଟଙ୍କୁ ଡାକିବାକୁ ହେବ । ମୁଁ ସେମାନଙ୍କୁ ଗିର୍ଜାରେ ବ୍ୟସ୍ତଥିବା କଥା କହି ଖସି ପାଇଛି ।

ତେବେ ଖ୍ରୀଷ୍ଟିଆନ ପ୍ରଚାର କବଳରୁ ସମ୍ପୂର୍ଣ୍ଣ ଖସି ମିଳି ନ ଥିଲି । ମାର୍ଜିତ ଧରଣର ପ୍ରଚାର ଖ୍ରୀଷ୍ଟିଆନ ଛାତ୍ର ସଂଘ (SCM) ବିଶ୍ୱବିଦ୍ୟାଳୟରେ ଖୁବ୍ କରନ୍ତି—ସେମାନେ ଖେଳିବାକୁ, ଖାଇବାକୁ, ବୁଲିବାକୁ ଡାକନେଇ—ବିଶେଷ କରି ଏସିଆ ଓ ଆଫ୍ରିକାର ଛାତ୍ରଛାତ୍ରୀମାନଙ୍କୁ ମାର୍ଜିତ ଓ ଉନ୍ନତ ଢଙ୍ଗରେ ଧର୍ମ ପ୍ରଚାର କରନ୍ତି । ଖାଇବା ପୂର୍ବରୁ ସେମାନଙ୍କ ସହିତ ତୁମକୁ ତାଙ୍କ ଭଳି ମୁଣ୍ଡନୁଆଁଇ ଈଶ୍ୱରଙ୍କୁ ସୃଷ୍ଟି ପାଇଁ ଧନ୍ୟବାଦ ଦେବାକୁ ହୁଏ, ଖ୍ରୀଷ୍ଟମାସ ଛୁଟିରେ ବୁଲିବାବେଳେ କାରୋଲ ଗାଇ ଯୀଶୁଙ୍କର ବନ୍ଦନା ଗାଇବାକୁ ହୁଏ, ବର୍ଷର ଅନ୍ୟ ସମୟରେ ତୁମ ଧର୍ମ ନେଇ ତୁମକୁ କହିବାକୁ ବା ସେମାନଙ୍କ ଧର୍ମ ନେଇ ବକ୍ତୃତା ଶୁଣିବାକୁ ନିମନ୍ତ୍ରଣ ଆସେ ।

ସେତିକି ନୁହେଁ, ସହରର ସମ୍ଭ୍ରାନ୍ତ ବୃଦ୍ଧବୃଦ୍ଧାମାନେ ତୁମକୁ ଡିନର ପାଇଁ ଡାକି ନେଇ, ଆମେରିକାର ସବଂଶ ଚାଲିଥିବା ଏହି ମାନସିକ ଯୁଦ୍ଧକୁ ଅବିଚ୍ଛିନ୍ନ ରଖନ୍ତି—ତୁମେ ଯୀସସ୍‌କୁ ବିଶ୍ୱାସ କର କି ? ବାଇବେଲ ପଢ଼ିଛ କି ? ସୁସମାଚାର ଶୁଣିଛ କି ? ନ ହେଲେ ତାଆରି ସହିତ ପ୍ରଶ୍ନ ହୁଏ— ତୁମେମାନେ ଭାରତରେ ମୂର୍ତ୍ତି ପୂଜା କର କି ? ପୁନର୍ଜନ୍ମରେ ବିଶ୍ୱାସ କରୁଛ କି ? ଇତ୍ୟାଦି । ଏହିପରି ଗୋଟିଏ ପରିବାର ସହିତ ଆମମାନଙ୍କର ଘନିଷ୍ଠ ବନ୍ଧୁତା ହୋଇଥିଲା । ଗୃହସ୍ଥଙ୍କର ଦୁଇଟି ଝିଅରୁ ସାନଟିର ନାମ୍ ଜୋଏନ ଗାରନର, ବିଶ୍ୱବିଦ୍ୟାଳୟରେ ସେ ବି. ଏ. ପଢ଼ୁଥିଲା । ଶ୍ରୀମତୀଙ୍କ ସହ ତାର ବେଶ୍ ବନ୍ଧୁତା ହୋଇ ଯାଇଥିଲା । ତା’ କଥା ମୁଁ ଆଗରୁ କହିଛି । ଝିଅଟିର ଧର୍ମୋନ୍ମାଦତା କଳ୍ପନା ଅବର୍ଣ୍ଣନୀୟ । ଅନ୍ୟାନ୍ୟ ଭାରତୀୟ ଛାତ୍ରମାନଙ୍କ ସହ ଧର୍ମ ନେଇ ବହୁ ବିତର୍କ ସେ କରୁଥିବା କଥା ମୁଁ ଶୁଣେ କିନ୍ତୁ କେବେ ପ୍ରତ୍ୟକ୍ଷରେ ଦେଖି ନ ଥିଲି । ମୋ ସାଙ୍ଗରେ ସେ ସେହି ବିଷୟରେ କେବେ କଥାବାର୍ତ୍ତା କରେ ନାହିଁ ।

କେବଳ ଘରକୁ ବୁଲି ଆସିଲେ ଶ୍ରୀ ଜଗନ୍ନାଥଙ୍କ କ୍ୟାଲେଣ୍ଡର ଆଡ଼କୁ କଟମଟ କରି ଚାହେଁ । ମୁଁ ଓ ଶ୍ରୀମତୀ ତାର ପ୍ରତିକ୍ରିୟା ଦେଖି ମନେ ମନେ ହସୁ; କିନ୍ତୁ ଉପରେ ପଡ଼ି ଆମେ କେବେ କିଛି କହୁ ନ ଥାଉ । ଦିନେ କିନ୍ତୁ ଅଗ୍ନି ଉଦ୍‌ଗୀରଣ ହେଲା, ଡାକ୍ତର ଉଜ୍ଜଳ ବୁଝାଇଲେ ଗନ୍ତିତରେ ରେଫର୍ କରୁଥିବା ବନ୍ଧୁ ଆତ୍ମଜ୍ଞାନ ଦାସ । ସେଦିନ ଜୋଏନ ଓ ସେ ଦୁହେଁ ଉପସ୍ଥିତ ଥିଲେ ଆମ ଘରେ । ଆତ୍ମବାବୁ ଜୋଏନ୍‌କୁ କହିଲେ—ତୁମେ ଯମନ୍ତ୍ରଙ୍କୁ ତୁମ ଧର୍ମ କଥା କହୁଛ, କୃଷ୍ଣବାବୁଙ୍କୁ କାହିଁକି କହୁନାହଁ ?

ଜୋଏନ୍ କହିଲା ସଙ୍କୁଚିତ ହୋଇ ଉଠିଲା । ତା'ପରେ କଥା ହେଉ ହେଉ ମୋତେ ବସ୍ତୁରକ ରୂପେ ରଖି ଦୁହିଁଙ୍କ ଭିତରେ ଧର୍ମ ନେଇ ଗୁଡ଼ାଏ ତର୍କ ହୋଇଗଲା । ସେହି ତର୍କ ଭିତରେ ଜୋଏନ୍ କହିଥିଲା—ଗାନ୍ଧୀଙ୍କୁ ମଧ୍ୟ ଈଶ୍ୱରଙ୍କ ପାଖକୁ ଯିବା ପୂର୍ବରୁ ଖ୍ରୀଷ୍ଟିୟାନ୍ ହେବାକୁ ହେବ, ଅନ୍ୟ ଜନ୍ମରେ ପଛେ ହେଉ, ସେ ଖ୍ରୀଷ୍ଟିୟାନ୍ ଧର୍ମେ ଦୀକ୍ଷିତ ହେବେ । ତେବେ ଯାଇ ତାଙ୍କର ଈଶ୍ୱର ପ୍ରାପ୍ତି ହେବ । ତା କଥାରେ ମୁଁ ସ୍ତବ୍ଧ ହୋଇଗଲି ।

ଜୋଏନ୍ ବୁଦ୍ଧିମତୀ । ଭାରତରୁ ପ୍ରଚାରକମାନେ ଆମେରିକା, କାନାଡ଼ା ଆସି ହିନ୍ଦୁ ସଭ୍ୟତା ଓ ସଂସ୍କୃତି ପ୍ରଚାର କରୁଥିବା କଥା ବିଷୟରେ ସେ ସଚେତନ; କିନ୍ତୁ ସେହି କଥା ଯୋଗୁଁ ସେ ଖୁବ୍ ସୁଖୀ ନ ଥିଲା । ଆମେରିକାରେ, କାନାଡ଼ାରେ ଭାରତବର୍ଷରୁ ଲୋକେ ଆସି ଭାରତୀୟ ଧର୍ମ ପ୍ରଚାର କରିବାକୁ ଚେଷ୍ଟା କରିଛନ୍ତି । ରାମକୃଷ୍ଣ ମିଶନ୍ ଛଡ଼ା କାଲିଫର୍ଣ୍ଣିଆ ଅଞ୍ଚଳରେ ସ୍ୱାମୀ ଯୋଗାନନ୍ଦଙ୍କର Self Realization Fellowship ରହି କାମ କରୁଛି । କାନାଡ଼ାର ମଣ୍ଟ୍ରିଏଲ୍‌ରେ, ସ୍ୱାମୀ ଶିବାନନ୍ଦଙ୍କର ଶିଷ୍ୟ ସ୍ୱାମୀ ବିଷ୍ଣୁ ଦେବାନନ୍ଦ ଯୋଗ ଓ ଆସନ ଶିଖାଇବା ପାଇଁ ବିଖ୍ୟାତ । ଜୋଏନ୍ ପାଇଁ ଏତିକି ଆଶ୍ୱାସନାର କଥା ଯେ ଏମାନେ କ୍ୱଚିତ୍ ଲୋକଙ୍କର ଧର୍ମାନ୍ତର କରିଥାନ୍ତି । ସେଠାକାର ଲୋକଙ୍କୁ ଧର୍ମାନ୍ତର କରିବାକୁ ଚେଷ୍ଟା କଲେ ଏହି ହିନ୍ଦୁ ମିଶନାରୀମାନଙ୍କ ଅବସ୍ଥା ବିପଜ୍ଜନକ ହୋଇଯିବ ବୋଲି ମୋର ବିଶ୍ୱାସ । ଏମାନେ ଲୋକମାନଙ୍କୁ ଧର୍ମ ନ ଶିଖାଇ, ପ୍ରାଣାୟାମ, ଯୋଗ, ଇତ୍ୟାଦି ଶିଖିବାକୁ କେବଳ କହନ୍ତି । ସେଇଥିପାଇଁ ସେମାନଙ୍କର ରକ୍ଷା ହୋଇଛି । ସେଇଥିରେ ବି ଗୁଡ଼ାଏ ବାଧା, ପ୍ରତିବନ୍ଧକ । ଆମେରିକାର ଓ କାନାଡ଼ାର କେବଳ କେତେକ ଉଚ୍ଚଶିକ୍ଷିତ ଲୋକଙ୍କୁ ଏମାନେ ହିନ୍ଦୁ ଧର୍ମ ନେଇ ଯାହା କିଛି ବୁଝାଇବାକୁ ସକ୍ଷମ ହୋଇଛନ୍ତି । ଲକ୍ଷ୍ୟ କରିବାର କଥା ଯେ ଯେତେବେଳେ ଖ୍ରୀଷ୍ଟିୟାନ୍‌ମାନେ ଭାରତୀୟ ସମାଜର ତଳ ଶ୍ରେଣୀର ଲୋକଙ୍କୁ ଧର୍ମାନ୍ତରିତ କରାଇବାରେ ଲାଗିଛନ୍ତି, ସେତେବେଳେ ହିନ୍ଦୁ ପ୍ରଚାରକମାନେ, ସେଠି ଖୁବ୍ ବଡ଼ ଦାର୍ଶନିକ, କି ବୈଜ୍ଞାନିକ, କି ସାହିତ୍ୟିକ, ଗୀତା ଟିକିଏ ପଢ଼ିଦେଲେ, ବେଦାନ୍ତ ଦର୍ଶନରୁ କିଛି ଜାଣି ଦେଲେ ବା ଶୀର୍ଷାସନଟିଏ କରିଦେଲେ, ସନ୍ତୁଷ୍ଟ ।

ଭାରତୀୟମାନେ ଇତିହାସରୁ ରୋମ ସଭ୍ୟତାକୁ କିପରି ଖ୍ରୀଷ୍ଟିୟାନମାନେ ନିମ୍ନସ୍ତରରୁ ଲୋକଙ୍କୁ ଧର୍ମାନ୍ତରିତ କରି କରି, ଶେଷରେ ରୋମ୍‌ର ପତନ ଆଣିଥିଲେ, ସେ ବିଷୟରେ ଯଦି ସଚେତନ ହେବାକୁ ନାରାଜ, ତାହାହେଲେ ଅନ୍ୟୁନ ପକ୍ଷେ ଅଙ୍ଗେ ଲଭିଥିବା ପୂର୍ବବଙ୍ଗର ଇତିହାସରୁ କିଛି ଶିଖିବା ଉଚିତ । ସେଠି କୃଷୀ, ହରିଜନ, ସାଧାରଣ ଶ୍ରମିକ ମୁସଲମାନ ହୋଇଥିବାବେଳେ କେବଳ ଉପର ଶ୍ରେଣୀର ଲୋକେ ହିନ୍ଦୁ ହୋଇ ରହିଥିଲେ । ଏହି ବିଷମ ସାମାଜିକ ପରିସ୍ଥିତିର ଭୟାବହ ପରିଣତି କଣ ହେଲା ତାହା ଭାରତବାସୀ ଜାଣନ୍ତି ।

ତେବେ କାନାଡ଼ା ନେଇ ମୁଁ ଯାହା ସବୁ ଲେଖିଲି, ଏହି ସବୁ ସେଠାର କିଛିପସ୍ ଖ୍ରୀଷ୍ଟିୟାନମାନଙ୍କ ଧର୍ମାନ୍ଧତା କିନ୍ତୁ ଧର୍ମ ଏକ ବିଶାଳ, ବ୍ୟାପକ ଶକ୍ତି ରୂପେ କାର୍ଯ୍ୟ କରୁନାହିଁ ବୋଲି ମୁଁ ସିଦ୍ଧାନ୍ତ କରି ଚୁପ୍‌ଚାପ ରହି ଥାଆନ୍ତି; କିନ୍ତୁ ସେହି ସମୟରେ ଆଉ ଗୋଟିଏ କଥା ଘଟିଲା । ସେଠି ଥିବାବେଳେ କଚ୍ଛର ରଣାଞ୍ଚଳ ନେଇ ପ୍ରଥମେ ଓ କାଶ୍ମୀର ନେଇ ପରେ ପରେ ଭାରତର ପାକିସ୍ଥାନ ସହିତ ଯୁଦ୍ଧ ହେଲା ଓ ଭାରତରୁ ଯାଇଥିବା ମୁସଲମାନ ଛାତ୍ରମାନେ ପାକିସ୍ଥାନର ଛାତ୍ରମାନଙ୍କ ସହ ଏକଜୁଟ ହୋଇଗଲେ ।

ସେତେବେଳେ ଟରଣ୍ଟୋର ସମସ୍ତ ଖବର କାଗଜ ଏକ ସ୍ୱରରେ ପାକିସ୍ଥାନକୁ ସମର୍ଥନ କରି ଲେଖିବାରେ ଲଗିଲେ, ସମ୍ବାଦ ବି ପାକିସ୍ଥାନକୁ ଅନୁକୂଳ କରି ପରିବେଷଣ କରାଯାଉଥାଏ । ଖବର କାଗଜରେ ବାହାରୁଥାଏ ଯେ ଭାରତରେ ମୁସଲମାନମାନେ ଆତଙ୍କିତ ଓ ଅତ୍ୟାଚାରିତ ହୋଇ ରହିଛନ୍ତି । ସେମାନଙ୍କର ଲେଖାକୁ ସମାଲୋଚନା କରି ଆମେ କେତେଜଣ ଲେଖାଲେଖି ଆରମ୍ଭ କଲୁ । ସେହି ସମୟରେ ଭାରତୀୟ ମୁସଲମାନ ଛାତ୍ରମାନଙ୍କ ସାହାଯ୍ୟ ଦରକାର ପଡ଼ିଲା । ଆମେ ଭାବିଲୁ, ମୁସଲମାନ ଛାତ୍ରମାନେ ଯଦି ଲେଖିବେ ଯେ ଭାରତରେ ସବୁ ଧର୍ମକୁ ନିରପେକ୍ଷ କରି ଗଣତନ୍ତ୍ର ଶାସନ ଚାଲିଛି, ମୁସଲମାନମାନେ ଭାରତର ଅନ୍ୟାନ୍ୟ ଅଧିବାସୀମାନଙ୍କ ପରି ସବୁ ପ୍ରକାର ସ୍ୱାଧୀନତା ପାଇ ଭଲରେ ରହିଛନ୍ତି, ତାହାହେଲେ ଖବର କାଗଜଗୁଡ଼ିକର ଲେଖା ଉପଯୁକ୍ତ ଉତ୍ତର ପାଇବ । ଆଶ୍ଚର୍ଯ୍ୟର କଥା, ସେହି କେତେଦିନ ଆମମାନଙ୍କର ଭାରତୀୟ ମୁସଲମାନ ବନ୍ଧୁମାନଙ୍କୁ ପାକିସ୍ଥାନୀ ଛାତ୍ରମାନଙ୍କ ସହ ବୁଲିବା ଦେଖାଗଲା ଓ କେହି ଜଣେ ହେଲେ ଭାରତୀୟ ମୁସଲମାନ ଛାତ୍ର ଚିଠିଟିଏ ଲେଖିବା ପାଇଁ ଆଗଭର ହୋଇ ବାହାରି ଆସିଲେ ନାହିଁ । ୧୯୬୫ର ଶେଷାର୍ଦ୍ଧରେ, ଏହି ସବୁ ଘଟଣା ପରେ, ଧର୍ମ ପୃଥିବୀରେ ଏକ ଜୀବନ୍ତ ଶକ୍ତିରୂପେ ରହି କାମ କରୁଛି ବୋଲି ସ୍ୱୀକାର କରିବାକୁ, ଆମେ ବାଧ୍ୟ ହେଲୁ । ସେହି ଯୁଦ୍ଧ ଚାଲିଥିବାବେଳେ କ୍ୟାମ୍ପସ୍ ଭିତରେ ମୁଁ ଚାଲେ ଯାଉଛି, ଜଣେ ଅପରିଚିତ ଛାତ୍ର ମୋତେ ସଲାମ ଆଲେକମ୍ କରି

ମୁଁ ଟରଣ୍ଟୋର ଗୋଟିଏ ମସଜିଦ୍‌ରେ ହେଉଥିବା ମିଟିଂକୁ ଯାଇଛି କି ନାହିଁ ବୋଲି ପଚାରିଥିଲେ । ମୁଁ ନିଜକୁ ହିନ୍ଦୁ ବୋଲି କହି ଚାଲିଗଲି । କହି ରଖେ, ଟରଣ୍ଟୋରେ କେବଳ ନୁହେଁ କାନାଡ଼ା ଓ ଆମେରିକାର ବହୁ ଜାଗାରେ ବହୁ ମସଜିଦ୍ ରହିଛି, କିନ୍ତୁ ସେଠି ଗୋଟିଏ ବୋଲି ହିନ୍ଦୁମାନଙ୍କର ମନ୍ଦିର ନାହିଁ ।

ଏହି କିଛି ଗଣ୍ଡଗୋଳବେଳେ ଆମେମାନେ ଦେଖିଲୁ ଯେ ବିଶ୍ୱରେ ଏବେ ବି ଧର୍ମ କିପରି ଏକ ବଳିଷ୍ଠ ଶକ୍ତି ରୂପେ କାର୍ଯ୍ୟ କରୁଛି । ସମସ୍ତ ମୁସଲମାନ ରାଷ୍ଟ୍ର ପାକିସ୍ଥାନକୁ ଏକ ସ୍ୱରରେ ସମର୍ଥନ କରିବା ଛଡ଼ା ସେମାନେ ସେମିଟିକ୍ (ଆରବ ଜାତୀୟ) ଧର୍ମାବଲମ୍ବୀ ହୋଇଥିବା ଯୋଗୁଁ ଖ୍ରୀଷ୍ଟିଆନମାନଙ୍କର ଓ ଇହୁଦୀମାନଙ୍କର ସମର୍ଥନ ମଧ୍ୟ ପାଇଥିଲେ । ଭାରତରୁ ଉଦ୍ଭୂତ ଧର୍ମଗୁଡ଼ିକ ସେମିଟିକ୍ ହୋଇ ନଥିବା ଯୋଗୁଁ ସେଗୁଡ଼ିକୁ ନିମ୍ନସ୍ତରୀୟ ଧର୍ମରୂପେ ନିଆଯାଏ । ସେହି ସମୟରେ ହିନ୍ଦୁମାନଙ୍କର କାହିଁକି ଭାରତଛଡ଼ା ଆଉ ରାଷ୍ଟ୍ର ରହିଲାନାହିଁ ଓ ବୌଦ୍ଧଧର୍ମୀ ରାଷ୍ଟ୍ରଗୁଡ଼ିକ ସହିତ ଭାରତ କାହିଁକି ଘନିଷ୍ଠ ସମ୍ପର୍କ ରଖୁନାହିଁ, ଇତ୍ୟାଦି ପ୍ରଶ୍ନ ଆମମାନଙ୍କ ମନରେ ଉଠୁଥାଏ । ମନେ ହେଉଥାଏ ହିନ୍ଦୁମାନେ ଅଫ୍ରିକା ଓ ଏସିଆରେ ସେମାନଙ୍କର ଧର୍ମ ଓ ସଂସ୍କୃତି ପ୍ରଚାର କରିବାପାଇଁ ଆଗରୁ ଅଳ୍ପ ଟିକିଏ ବିଜ୍ଞ ଓ ବଳିଷ୍ଠ ଚେଷ୍ଟା କରିଥାନ୍ତେ ଯଦି··· !



# ମୁଷ୍ଟି ଯୁଦ୍ଧ

**ମୁ**ଷ୍ଟି କିମ୍ବା ମଲ୍ଲଯୁଦ୍ଧ ଦେଖିବାକୁ ମୋର କେବେହେଲେ ଆଗ୍ରହ ନଥିଲା । କାନାଡ଼ାରେ, ବିଶେଷକରି ଟରଣ୍ଟୋରେ କିନ୍ତୁ, ବହୁ ବୁଦ୍ଧିଜୀବୀ "ମାପ୍‌ଲ୍ ଲିଫ୍ ଗାର୍ଡ଼େନ"କୁ ଯାଇ ମୁଷ୍ଟିଯୁଦ୍ଧ କି କୁସ୍ତି ଦେଖି ଅବସର ବିନୋଦନ କରନ୍ତି । "ଗାର୍ଡ଼େନ"କୁ ଯିବାର ସୁବିଧା ନଥିଲେ ସେମାନେ ଟେଲିଭିଜନରେ ମୁଷ୍ଟି ଓ ମଲ୍ଲଯୁଦ୍ଧର ପ୍ରୋଗ୍ରାମଗୁଡ଼ିକୁ ଦେଖନ୍ତି । ଏହି ପ୍ରୋଗ୍ରାମଗୁଡ଼ିକ ଶନିବାର ଓ ରବିବାର ଦିନ ଦ୍ୱିପ୍ରହରରେ ଟେଲିଭିଜନରେ ଦେଖା ଯାଇଥାଏ, ବିଶେଷ ପ୍ରୋଗ୍ରାମ ହେଲେ, ଯେ କୌଣସି ଦିନ ରାତ୍ରିରେ । ହାମିଲଟନ୍‌ର ମାକ୍ ମାଷ୍ଟର ବିଶ୍ୱବିଦ୍ୟାଳୟର ଡଃ ଶ୍ରୀ ଗୋପାଳ ମହାନ୍ତିଙ୍କ ଯୋଗୁଁ ହେଉ ବା ଶ୍ରୀ ଆର୍ତ୍ତତ୍ରାଣ ଦାଶଙ୍କ ଯୋଗୁଁ ହେଉ, ଏହି ପ୍ରୋଗ୍ରାମଗୁଡ଼ିକ ପ୍ରତି ମୋର ପ୍ରଥମେ ଦୃଷ୍ଟି ପଡ଼ିଥିଲା । ମଲ୍ଲଯୁଦ୍ଧ, ବିଶେଷ କରି ମୁଷ୍ଟିଯୁଦ୍ଧର କ୍ରୂରତା କଥା ମୁଁ କହିବାରୁ କାନେଡ଼ିଆନ ବୁଦ୍ଧିଜୀବୀମାନେ ସେମାନଙ୍କ ସଭ୍ୟତା ସ୍ରୋତର ଉତ୍ପତ୍ତିସ୍ଥଳ ରୋମ ଓ ଗ୍ରୀସ ଫସ୍କ ଢର କଥା ଓ ସେକାଳରେ ଥିବା ଗ୍ଲାଡ଼ିଏଟରମାନଙ୍କ କଥା କହୁଥିଲେ । ତଥାପି ମୁଷ୍ଟି ଓ ମଲ୍ଲଯୁଦ୍ଧ ପ୍ରତି ମୋର ଆଦର ସୃଷ୍ଟି ହୋଇ ପାରି ନଥିଲା; କିନ୍ତୁ ନିଗ୍ରୋ ମୁସଲମାନ ମହମ୍ମଦ ଆଲ୍ଲୀ ଓ ଟରଣ୍ଟୋର ଖ୍ରୀଷ୍ଟିୟାନ୍, ଜର୍ଜ ସିଭାଲୋଙ୍କର ମୁଷ୍ଟିଯୁଦ୍ଧର ପ୍ରୋଗ୍ରାମ ମୁଁ ଦେଖିଥିଲି । ଖୁବ୍ ଆଗ୍ରହରେ ଦେଖିଥିଲି, କାରଣ ସେହି ଯୁଦ୍ଧ ପଛରେ ଦୁହିଁଙ୍କ ଧାର୍ମିକ ଓ ଜାତୀୟ ଚେତନା ( Racial conciousness ) କାମ କରୁଥିଲା ବୋଲି ଆଗରୁ ପ୍ରଚାର ହୋଇଥିଲା, ବିଶେଷ କରି ଆମେରିକାର ମହମ୍ମଦ ଆଲ୍ଲୀଙ୍କ ପକ୍ଷରୁ । ମହମ୍ମଦ ଆଲ୍ଲୀ ଆମେରିକାର ଅଧିକାଂଶ ନିଗ୍ରୋଙ୍କ ପରି ପିଲାଦିନେ ଖୁବ୍ ଗରିବ ଥିଲେ । ନିଜର ଦାରିଦ୍ର୍ୟ ଶ୍ୱେତାଙ୍ଗ ଖ୍ରୀଷ୍ଟିୟାନମାନଙ୍କ ବୈଭବ ଓ ସେମାନଙ୍କର ନିଗ୍ରୋମାନଙ୍କ ପ୍ରତି ଅକାରଣ ବିଦ୍ୱେଷ ଓ ଘୃଣା ଦେଖି ତାଙ୍କ ମନରେ ଖ୍ରୀଷ୍ଟିୟାନ ଧର୍ମ ପ୍ରତି ସଦ୍‌ଭାବନା ସବୁ ଚାଲି ଯାଇଥିଲା । କେବଳ ସେ ନୁହେଁ, ଆମେରିକାର ବହୁ ନିଗ୍ରୋ ଏହିପରି ପରିସ୍ଥିତିରେ ପଡ଼ି ଭାବୁଛନ୍ତି ଯେ ସେମାନଙ୍କ ପାଇଁ ଖ୍ରୀଷ୍ଟିୟାନ୍ ଧର୍ମ ଉଦ୍ଦିଷ୍ଟ ନୁହେଁ; କାରଣ ସେମାନେ ଖ୍ରୀଷ୍ଟିୟାନ୍‌ମାନଙ୍କ ଦ୍ୱାରା ପ୍ରଥମରୁ—ମୂଳରୁ ଅତ୍ୟାଚାରିତ, ଅପମାନିତ । ସେମାନଙ୍କର ଦୁଃଖଗ୍ରସ୍ତ ମନ ଯୁକ୍ତି

କରେ—ଶ୍ୱେତାଙ୍ଗ ଯୀଶୁଖ୍ରୀଷ୍ଟ ଇହୁଦୀଜାତିର ଲୋକ, କୃଷ୍ଣକାୟ ଜାତିର ନୁହେଁ, ତେଣୁ ସେମାନଙ୍କ ପାଇଁ ଆରବର ମହମ୍ମଦଙ୍କ ବାଣୀ ହିଁ ଉପଯୁକ୍ତ । ମୁସଲମାନ ଧର୍ମର କେଉଁ ଅଂଶ ସେମାନଙ୍କୁ ବିଶେଷ କରି ଆକର୍ଷଣ କରିଛି ତାହା ଜାଣିବା ମୁସ୍କିଲ । ଦୁର୍ଭାଗ୍ୟକୁ କୌଣସି ବ୍ଲାକ୍ ମୁସଲମାନଙ୍କ ସହିତ ମୁଁ ମତ-ବିନିମୟ କରିବାର ସୁଯୋଗ ପାଇ ପାରିଲିନି । ଦେଖିବାକୁ ଗଲେ ମହମ୍ମଦ ମଧ୍ୟ ଆରବ ଜାତୀୟ ଲୋକ ହେତୁ ଯୀଶୁଖ୍ରୀଷ୍ଟଙ୍କ ପରି ଶ୍ୱେତାଙ୍ଗ ସମ୍ପ୍ରଦାୟର ଲୋକ ହେବେ । କେବଳ ଶରୀର ରଙ୍ଗ ଦୃଷ୍ଟିରୁ ଦେଖିଲେ ହିନ୍ଦୁମାନଙ୍କର ରାମ ଓ କୃଷ୍ଣ ହିଁ ନିଗ୍ରୋମାନଙ୍କ ପାଇଁ ଆଦର୍ଶ ଅବତାର ହେବା ଉଚିତ । ତେବେ ମୋତେ ଯାହା ଜଣାପଡ଼ିଲା, ସେମାନଙ୍କର ଖ୍ରୀଷ୍ଟିୟାନ ଧର୍ମ ପ୍ରତି ପ୍ରବଳ ବିତୃଷ୍ଣା ଓ ମୁସଲମାନ ଧର୍ମର ପ୍ରଚଣ୍ଡ ଭାତୃବାଦ ଓ ଧର୍ମ ତଥା ନ୍ୟାୟ ପାଇଁ ହିଂସାକୁ ଯଥାର୍ଥ ବୋଲି ଗ୍ରହଣ କରିବାରେ—ମହମ୍ମଦଙ୍କ ଧର୍ମରେ କରୁସାହିର ଅନୁପଯୋଗି ହିଁ, ଆମେରିକା ଓ କାନାଡ଼ାରେ ନିଗ୍ରୋମାନଙ୍କ ଭିତରେ ବ୍ଲାକମୁସ୍‌ଲିମ୍ ଦଳ ସୃଷ୍ଟି କରିବାରେ ସମର୍ଥ ହୋଇଛି । ଆଜିକାଲି ବହୁ ନିଗ୍ରୋ, ଖ୍ରୀଷ୍ଟିୟାନ ଧର୍ମ ଛାଡ଼ି ମୁସଲମାନ ହେଉଛନ୍ତି । ଆମେରିକାର ସୁପ୍ରସିଦ୍ଧ ଏଲିଜା ମହମ୍ମଦ ସେମାନଙ୍କର ଗୁରୁ । ଏହି ଏଲିଜା ମହମ୍ମଦଙ୍କର ପରମ ପ୍ରିୟ ଶିଷ୍ୟ ମୁଷ୍ଟିଯୋଦ୍ଧା ମହମ୍ମଦ ଅଲ୍ଲୀ । ମୁସଲମାନ ହେବା ପୂର୍ବରୁ ତାଙ୍କର ନାମ ଥିଲା କେସିଅସ୍ କ୍ଲେ । ଆଜିକାଲି କୌଣସି ମୁଷ୍ଟିଯୁଦ୍ଧରେ ତାଙ୍କର ପୂର୍ବ ନାମକୁ କେହି ଘୋଷଣା କଲେ ସେ କ୍ଷୁବ୍ଧ ହେଉଛନ୍ତି—ସର୍ବଦା ମହମ୍ମଦ ଅଲ୍ଲୀ ନାମରେ ହିଁ ପରିଚିତ ହେବାକୁ ସେ ଇଚ୍ଛୁକ । ତଥାପି ଆମେରିକା ଓ କାନାଡ଼ାର ସମ୍ବାଦପତ୍ର-ଗୁଡ଼ିକ, ଯୁଦ୍ଧକ୍ଷେତ୍ରରେ ଘୋଷଣା ପାଇଁ ନିଯୁକ୍ତ ଲୋକେ, ତାଙ୍କୁ ଚିଡ଼ାଇବା ପାଇଁ, 'କେସିଅସ୍ କ୍ଲେ' ବୋଲି ତାଙ୍କର ନାମକୁ ଘୋଷଣା କରିଥାଆନ୍ତି ।

ଏହି ବାଇଶି ତେଇଶି ବର୍ଷର ଯୁବକଙ୍କୁ ମୁଁ ସେଦିନ ଟି.ଭି ସ୍କ୍ରିନରେ, ଜର୍ଜ ସିଭଲେଙ୍କ ସହିତ, ଦେଖିଲି । ଅଲ୍ଲୀ ଓ ସିଭଲେ ଉଭୟେ ପ୍ରଚଣ୍ଡ ଶକ୍ତିଶାଳୀ ମନୁଷ୍ୟ ପରି ଦିଶୁଥାନ୍ତି—ସିଭଲେ ଗେଡ଼ା, ଅଲ୍ଲୀ ଡେଙ୍ଗା, ଛ'ଫୁଟ ଉପରେ । ଉଭୟଙ୍କର ଲୌହ ପିଣ୍ଡୁଳା ପରି ମାଂସପେଶୀ, ବଜ୍ରପରି ଶରୀର । ଦୁହିଁଙ୍କର ଯୁଦ୍ଧ ଆରମ୍ଭ ହେବାମାତ୍ରେ, ମୁଁ ଦେଖିଲି, ଅଲ୍ଲୀ ତାଙ୍କର ଦୀର୍ଘକାୟ, ଶକ୍ତିଶାଳୀ ଶରୀରଟାକୁ ଯୁଦ୍ଧ ପାଇଁ ନିର୍ଦ୍ଦିଷ୍ଟ ଭୂମି ଉପରେ, ଫୁଲ ପରି ନଚାଇବାକୁ ଲାଗିଲେ—ଦଉଡ଼ା ଘେରା ଯୁଦ୍ଧ ଜାଗାଟିରୁ ଏପଟ ସେପଟ, ଏ କୋଣରୁ ସେ କୋଣ, ସେ କୋଣରୁ ଏ କୋଣ । ମୁଁ ହସିଲି ଓ ଆଶ୍ଚର୍ଯ୍ୟ ହେଲି । ମୁଷ୍ଟିଯୁଦ୍ଧ କରିବାକୁ ଯାଇ, ଜଣେ ଲୋକ ପ୍ରତିଦ୍ୱନ୍ଦୀକୁ ମାରିବାକୁ ନ ଯାଇ, ଥେଇ ଥେଇ ହୋଇ ନାଚିବ, ଏହା କିପରି କଥା ? ମୁହୂର୍ତ୍ତେ ହୋଇ ତାଙ୍କର ପାଦ ତଳେ ସ୍ଥିର ହୋଇ ରହୁ ନ ଥାଏ, ସେ ନାଚୁଥାନ୍ତି ହାତ ଓ ମୁଷ୍ଟିକୁ ପ୍ରସ୍ତୁତ ରଖି, ସମ୍ପୂର୍ଣ୍ଣ ସଜାଗ ରହି । ଜର୍ଜ ସିଭଲେଙ୍କ ଭାବଭଙ୍ଗୀ ମୋର ବେଶି

ପସନ୍ଦ ଆସିଲା । ଦୁଇ ହାତରେ ବଜ୍ରମୁଷ୍ଟିକୁ ସେ ସଜାଡ଼ି, ମୁହଁକୁ କଠିନ ବନାଇ, ଭୟଙ୍କର ଷଣ୍ଢପରି, ଧୀର ପଦକ୍ଷେପରେ ଆଲିଙ୍କ ଆଡ଼କୁ ମାଡ଼ି ଆସିବାକୁ ଲାଗିଲେ । ମୁଁ ଅପେକ୍ଷା କରୁଥାଏ, ଯେ କୌଣସି ମୁହୂର୍ତ୍ତରେ ଆଲିଙ୍କୁ ସେ ଭୂମି ଉପରେ ଦେଇ ହୋଇଥିବା ଦଉଡ଼ି ପାଖକୁ ନେଇଯିବେ, ଆଉ ନାଚିବାକୁ, ପଳାଇବାକୁ ଜାଗା ରହିବ ନାହିଁ—ବେଶ୍, ତା' ପରେ ଗୋଟିଏ ଭୟଙ୍କର ମୁଷ୍ଟି ଆଲିଙ୍କ ମୁହଁ ଉପରକୁ, ଆଲି ମାଟି କାମୁଡ଼ିବେ; କିନ୍ତୁ ଆଶ୍ଚର୍ଯ୍ୟର କଥା, ଆଖିକୁ ମୁଁ ବିଶ୍ୱାସ କରି ପାରିଲିନି । ସିଷ୍ଟନେ ତାଙ୍କ ଆଡ଼କୁ ମାଡ଼ି ଆସିବାରେ ଆଲିଙ୍କର ମୁଷ୍ଟି ମେଘରୁ ବିଜୁଳି ବାହାରିବା ପରି, ଚଟ୍ ଚଟ୍ ଆସି ସିଷ୍ଟନଙ୍କର ମୁହଁକୁ ଆଘାତ କରି ଦେଇଗଲା । ଥରେ, ଦୁଇଥର, ତିନିଥର । ନାଚ କିନ୍ତୁ ଅବିରାମ ଚାଲିଥାଏ । ସିଷ୍ଟନଙ୍କର ମୁହଁ ଓ ଆଖି ଫୁଲି ଉଠିଲା ସେହି ତିନୋଟି ମୁଷ୍ଟିରେ । ପ୍ରଥମ ରାଉଣ୍ଡରେ ସିଷ୍ଟନେ ଆଲିଙ୍କୁ ଆଦୌ ମାରି ପାରିଲେ ନାହିଁ । ସେ ମାରିବାକୁ ଗଲାବେଳେ ନାଚି ନାଚି ଆଲି ଅନ୍ୟ କୌଣସିଠିକି ଚାଲି ଯାଉଥାଆନ୍ତି । ତେବେ ଜଣା ପଡ଼ୁଥାଏ ଯେପରି, ଏହିପରି ନାଚି ନାଚି ଆଲି କ୍ଳାନ୍ତ ହୋଇଯିବେ ଓ କୌଣସି ନା କୌଣସି ରାଉଣ୍ଡରେ ସିଷ୍ଟନଙ୍କର ମୁଷ୍ଟି ତାଙ୍କୁ ଭୂପତିତ କରିଦେବ; କିନ୍ତୁ ସେକଥା ହେଲାନାହିଁ । ସବୁ ରାଉଣ୍ଡରେ ନାଚି ନାଚି, ଆଲି ତାଙ୍କର ଲମ୍ବ ହାତରେ ସିଷ୍ଟନଙ୍କର ମୁହଁ ଓ ମୁଣ୍ଡକୁ ବାରମ୍ବାର ସେକି ଯାଉ ଥାଆନ୍ତି । ପଏଣ୍ଟ ପରେ ପଏଣ୍ଟ ପାଇ ଯାଉ ଥାଆନ୍ତି । ବ୍ୟଥିତ ହୋଇ ସିଷ୍ଟନେ ଶେଷରେ ଏପରି ହିଂସ୍ର ଓ କ୍ରୁଦ୍ଧ ହୋଇଗଲେ ଯେ ସବୁ ନିୟମ ଭାଙ୍ଗି, ଆଲିଙ୍କର ତଳପେଟ ଓ ଉରୁକୁ ମାରିବାକୁ ଲାଗିଲେ; କିନ୍ତୁ ସେହି ସମୟରେ ଆଲିଙ୍କର ବିଦ୍ୟୁତ୍ ମୁଷ୍ଟି ଦୁଇଟି ସିଷ୍ଟନଙ୍କର ନାକ, ଆଖି, ଓଠକୁ ଆଘାତ କରିବାରେ ଲାଗିଥା'ନ୍ତି । ଏହିପରି ପନ୍ଦର ରାଉଣ୍ଡ ଯୁଦ୍ଧପରେ, ସିଷ୍ଟନେ କ୍ଷତବିକ୍ଷତ, ରକ୍ତାକ୍ତ ହୋଇ ବାହାରିବାବେଳକୁ ଆଲି ଅକ୍ଷତ ଓ ଅକ୍ଳାନ୍ତ ହୋଇ ରିଙ୍ଗ୍‌ରୁ ବାହାରିଲେ । ସମସ୍ତେ ତାଙ୍କର ରଣକୌଶଳକୁ ପ୍ରଶଂସା କରୁଥାନ୍ତି । ପରେ ଆଲି କହିଲେ ଯେ ତାଙ୍କର ଏହି ବିଜୟ ପଛରେ ଏଲିଜା ମହମ୍ମଦଙ୍କର ଆଶୀର୍ବାଦ କାମ କରୁଛି । କୁଆଡ଼େ ପିଲାଦିନେ ଆଲିଙ୍କର ଇଚ୍ଛା ଥିଲା ସେ ଓକିଲ ହେବେ; କିନ୍ତୁ ପଢ଼ାପଢ଼ିରେ ସୁବିଧା ନଥିଲା, ଲକ୍ଷ୍ୟଭ୍ରଷ୍ଟ ହୋଇ ବୁଲିବାବେଳେ ଧର୍ମ ପ୍ରଚାରକ ଏଲିଜା ମହମ୍ମଦ ତାଙ୍କ ଜୀବନକୁ ଆସନ୍ତି । ତା'ପରେ ସେ କୋରାନ ନିୟମାନୁଯାୟୀ, ଆମେରିକାର ଅନ୍ୟାନ୍ୟ ତରୁଣମାନଙ୍କ ପରି ମଦ୍ୟ, ନାଚ ଡେଟିଂରେ ନ ପଡ଼ି, ସଂଯତ ଜୀବନ ଯାପନ କରନ୍ତି । ଆମେରିକାରେ ମୁସଲମାନ ଧର୍ମ ପ୍ରଚାର ଓ ନିଗ୍ରୋମାନଙ୍କୁ ମୁସଲମାନ କରିବା ସେହିଦିନରୁ ତାଙ୍କର ଲକ୍ଷ୍ୟ । ମୁସଲମାନ ଓ ତହିଁକି ପୁଣି ନିଗ୍ରୋ ଜଣେ ଶ୍ୱେତାଙ୍ଗ ଖ୍ରୀଷ୍ଟିୟାନଙ୍କଠୁ ଅଧିକ ଶକ୍ତିଶାଳୀ ହୋଇ ପାରିବ; ଏହା ପ୍ରମାଣ କରିବାକୁ ଯାଇ, ସେ ମୁଷ୍ଟିଯୁଦ୍ଧ ଶିଖନ୍ତି । ମୁଷ୍ଟିଯୁଦ୍ଧରେ ସେ ଚାମ୍ପିୟାନ ହେବାର ଗୌରବ ବାସ୍ତବରେ ନିଗ୍ରୋ ଜାତି ଓ ମୁସଲମାନ ଧର୍ମର ଗୌରବ ବୋଲି

ତାଙ୍କର ମତ । ଏଲିଜା ମହମ୍ମଦଙ୍କର ସଂସ୍ପର୍ଶରେ ଆସି ତାଙ୍କର ବିଶ୍ୱାସ ହେଲା ଯେ ନିଗ୍ରୋଜାତି ମୁସଲମାନ ହୋଇ ଓ ସଂଘବଦ୍ଧ ହୋଇ, ହିଂସାତ୍ମକ ଉପାୟରେ ହେଉ ପଛେ, ଆମେରିକା ଭୂଖଣ୍ଡରେ ସେମାନଙ୍କ ଦାବୀ ସାବ୍ୟସ୍ତ କରି ପାରିବ । ବେଳେ ବେଳେ, ଅତ୍ୟନ୍ତ ଗର୍ବରେ, ନିଜକୁ ସେ ମହମ୍ମଦ ଆଲି ଦି ଗ୍ରେଟ୍ ବୋଲି କହନ୍ତି— ଯେପରିକି ଆଲେକ୍‌ଜାଣ୍ଡର ଦି ଗ୍ରେଟ୍ ।

ମୁସଲମାନ ଧର୍ମର ଶ୍ରେଷ୍ଠତା ପ୍ରତିପାଦନ ପାଇଁ ବ୍ଲାକ୍ ମୁସଲମ୍‌ମାନଙ୍କ ପରିଶ୍ରମ ଓ ଉତ୍ସାହ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ସେଥିପାଇଁ ମଧ୍ୟ ସବୁ ମୁଷ୍ଟିଯୁଦ୍ଧରେ ଖ୍ରୀଷ୍ଟିୟାନ୍ ଦର୍ଶକମାନେ ମହମ୍ମଦ ଆଲିଙ୍କର ପରାଜୟ ହିଁ ଇଚ୍ଛା କରିଥାନ୍ତି । ସେମାନଙ୍କର ହ୍ୱିସିଲ ଓ ନାନାପ୍ରକାର ଅସଭ୍ୟ ଚିତ୍କାର ଆଲିଙ୍କୁ ଆହୁରି ଆହୁରି ଉତ୍ସାହ ଦିଏ । ଏହି ବ୍ଲାକ ମୁସଲମ୍‌ମାନେ, ଆମେରିକାର ଖ୍ରୀଷ୍ଟିୟାନ୍ ଧର୍ମୀ ନିଗ୍ରୋଙ୍କୁ ଘୃଣା କରନ୍ତି । ସେମାନଙ୍କର ଅହିଂସାତ୍ମକ ପ୍ରୟୋଗ ନିଗ୍ରୋମାନଙ୍କର କୌଣସି ମଙ୍ଗଳ କରିବନାହିଁ ବୋଲି ବ୍ଲାକ୍ ମୁସଲମ୍‌ମାନଙ୍କ ବିଶ୍ୱାସ । ମୋତେ ଜଣାପଡ଼ିଲା, ଯେପରି ଗାନ୍ଧିବାଦୀ ଅହିଂସ ମାର୍ଟିନଲୁଥର୍ କିଙ୍ଗ୍ କ୍ରମଶଃ ଲୋକପ୍ରିୟତା ହରାଉଛନ୍ତି ଓ ଅପର ପକ୍ଷରେ ସକ୍ରିୟ ସଂଗ୍ରାମ ପାଇଁ ଆହ୍ୱାନ ଦେଉଥିବା ବ୍ଲାକ୍ ମୁସ୍ଲିମ ନେତା କାରି ମାଇକେଲ୍ ଆଦି ଲୋକ ଆଜି ଜନପ୍ରିୟ ହୋଇ ଉଠୁଛନ୍ତି । ଏହି ନୂତନ ନିଗ୍ରୋ ନେତାମାନଙ୍କ କଥା ଥରେ ପୂର୍ବ ପାକିସ୍ଥାନରୁ ଯାଇଥିବା ଡଃ ସଫିଲୁଲ ହକ୍‌ଙ୍କ ସହିତ ମୋର ପଡ଼ିଥିଲା । ସେ କହିଥିଲେ—ମୁସଲମାନ ଧର୍ମ ଭବିଷ୍ୟତ ପୃଥିବୀର ଧର୍ମ । ଅନ୍ୟ ସବୁ ଧର୍ମ ପ୍ରାଚୀନ, ଜରାଜୀର୍ଣ୍ଣ । ଭବିଷ୍ୟତରେ ଧର୍ମ ଓ ସଭ୍ୟତା ସଂଘର୍ଷରେ, ପୃଥିବୀର ନବୀନତମ ଧର୍ମ ଇସଲାମ ହିଁ ବିଜେତା ହେବ । ଏଥିରେ ବାର୍ଦ୍ଧକ୍ୟର ରୁଚି ନାହିଁ, ଶକ୍ତିହୀନତା ନାହିଁ, ପ୍ରବୃତ୍ତି ବିରୁଦ୍ଧରେ ବିଦ୍ୱେଷ ନାହିଁ । ମୁଁ ଡଃ ହକ୍‌ଙ୍କୁ କହିଲି—ସେପରି ଦେଖିଲେ ସୃଜନ ଶକ୍ତି ଥିବା ଓ ନିଜକୁ ସାମୟିକ ସଂଶୋଧନ କରି ପାରୁଥିବା ଧର୍ମକୁ ବୃଦ୍ଧ ଓ ପୁରାତନ ବୋଲି କହିବାର କୌଣସି ଯଥାର୍ଥତା ନାହିଁ । ହିନ୍ଦୁ ଧର୍ମ ପ୍ରାଚୀନ ହେଲେ ମଧ୍ୟ ଜୈନ, ବୌଦ୍ଧ, ଶିଖ, ବ୍ରାହ୍ମ ଓ ମହିମା—ଏହିପରି ବହୁ ଧର୍ମକୁ ନିଜ ଭିତରୁ ସୃଷ୍ଟି କରି ପାରିଛି । ତା'ର ସମସ୍ତ ଇତିହାସ ଧର୍ମ ସଂସ୍କାରକ ଓ ପ୍ରଚାରକରେ ପରିପୂର୍ଣ୍ଣ । ସଫିଲୁଲ୍ ପରିସଂଖ୍ୟାନ୍‌ର ଛାତ୍ର ଥିଲେ, ପୁଣି ବଙ୍ଗାଳୀ ମୁସଲମାନ । ତେଣୁ ତାଙ୍କର ଧର୍ମୀୟ ଦୃଢ଼ତା ଜଣେ ପଶ୍ଚିମ ପାକିସ୍ଥାନୀ ମୁସଲମାନ ଛାତ୍ର ପରି ହୋଇ ପାରୁ ନଥିଲା । ତାଙ୍କର ସ୍ତ୍ରୀଙ୍କୁ ସେ ଶେଫାଲି ବୋଲି ଡାକନ୍ତି । ଭଲ ମୁଡ୍‌ରେ ଥିଲେ ଶେଫାଲି ଆମମାନଙ୍କୁ ସେମାନଙ୍କ ଘରେ ରବିନ୍ଦ୍ର ସଙ୍ଗୀତ ଗାଇ ଆମର ଚର୍ଚ୍ଚା କରନ୍ତି । କିନ୍ତୁ ସଙ୍ଗୀତ ଶେଷରେ ସବୁବେଳେ ଆମେ ଶୁଣୁ—"ରବିନ୍ଦ୍ର ବଡ଼ କବି କିନ୍ତୁ ନଜରୁଲ ବଡ଼ ସଙ୍ଗୀତଜ୍ଞ" । ରବିନ୍ଦ୍ର ଓ

ନଜରୁଲ ଇସଲାମଙ୍କ ବିଷୟରେ ମୋର ଏକା ପରିଜ୍ଞାନ ଥିବାରୁ ମୁଁ ଚୁପ୍ ରହେ, ସୁବିଧା ହେଲେ କେବେ ବଙ୍ଗଳା ଶିଖି କିଏ ବଡ଼ କବି ଓ କିଏ ବଡ଼ ସଙ୍ଗୀତଜ୍ଞ ଜାଣିବି ବୋଲି କହେ । ଏଇ କେତେଦିନ ତଳେ ଖବର କାଗଜରେ, ପୂର୍ବ ବଙ୍ଗରେ ଆଉ ରବୀନ୍ଦ୍ର ସଙ୍ଗୀତ ପ୍ରଚାରିତ ହେବନାହିଁ ବୋଲି ବାହାରିଥିଲା । ସେଥିପାଇଁ ସେଠାରେ ବଙ୍ଗାଳି ମୁସଲମାନମାନେ କ୍ଷୋଭ ପ୍ରକାଶ କରି ଆନ୍ଦୋଳନ ବି କରିଥିଲେ । ସେ ଆନ୍ଦୋଳନର ଶେଷ ପରିଣତି କ'ଣ ହେବ କେଜାଣି, ତେବେ ଏତିକି ସତକଥା ଯେ, ପୂର୍ବ ବଙ୍ଗଳାବାସୀଙ୍କୁ ଖାଣ୍ଟି ଓ ପ୍ରଚଣ୍ଡ ମୁସଲମାନ କରିବାକୁ ହେଲେ, ସେମାନଙ୍କଠୁ ରବୀନ୍ଦ୍ର ସଙ୍ଗୀତ ଓ ସାହିତ୍ୟଠୁ ଦୂରେଇବାକୁ ହେବ । ଏପରି କି ବଙ୍ଗଳା ଭାଷାକୁ ବି ସେମାନଙ୍କଠୁ ଛଡ଼ାଇ ଦେବା ଉଚିତ । ଗୋଟିଏ ଭାଷା, ଗୋଟିଏ ଜାତିର ଜୀବନ ଦର୍ଶନ ଧର୍ମ ଓ ସଂସ୍କୃତିର ବିଗ୍ରହ ଓ ବିଶ୍ୱାସକୁ ପ୍ରକାଶ କରିବାପାଇଁ ତିଆରି ହୋଇଥାଏ । ତେଣୁ ସେହି ଭାଷାରେ ଅନ୍ୟ କୌଣସି ବିଦେଶୀୟ ସଂସ୍କୃତିକୁ ପ୍ରକାଶ କରିବା ସବୁବେଳେ ସୁସାଧ୍ୟ ହୁଏ ନାହିଁ । ଏହି ଦୃଷ୍ଟିରୁ ଦେଖିଲେ ଭାରତରେ ଇଂରେଜୀ ଭାଷା ପରିବର୍ତ୍ତେ, ଯେ କୌଣସି ଭାରତୀୟ ଭାଷା ପ୍ରସାରିତ, ପ୍ରଚାରିତ, ବ୍ୟବହୃତ ହେଲେ ହିନ୍ଦୁ ସଂସ୍କୃତି ଓ ସଭ୍ୟତା ପାଇଁ ତାହା ମଙ୍ଗଳପ୍ରଦ ହେବ । ଆଉ ମଧ୍ୟ, ଏହି ଦୃଷ୍ଟିରୁ ଦେଖିଲେ, ମୁସଲମାନମାନଙ୍କ ଉର୍ଦ୍ଦୁ ଭାଷା ପାଇଁ ପରିସ୍ଥାନ ଲିପି ରହୁ ବୋଲି ଦାବୀର ଯଥାର୍ଥତା ବୁଝା ପଡ଼ିବ ।



# ଇହୁଦୀ

ଥରେ ବିଶ୍ୱବିଦ୍ୟାଳୟରେ କ୍ୟାମ୍ପସ୍ ଭିତରେ "ଆରବର ରୁମ୍"ରେ, ଆମେ ବସିଥାଉ । ବାହାରେ ତୁଷାର ବର୍ଷା ଚାଲିଥାଏ । ବାହାରକୁ ଯାଇ, ତୁଷାର ମାଡ଼ଖାଇ ଲାଇବ୍ରେରୀ ଯିବାକୁ କାହାରି ହେଲେ ଇଚ୍ଛା ହେଉନଥାଏ । କଫି ସରିଗଲେ ଆଉ କଫି ଆଣି ଆମେ କଥାର ଧାରାକୁ ଅବ୍ୟାହତ ରଖିଥାଉ । ଆଗରେ ଆମର ଆସି ତରୁଣୀଟିଏ ବସିଲେ । ଦେଖିବାକୁ ସାଧାରଣ କାନେଡ଼ିଆନ ଝିଅଙ୍କଠୁ ବେଶି ସୁନ୍ଦରୀ—ହାତରେ ଟ୍ରେରେ ଚକୋଲେଟର ପିଠାଟିଏ, ହାତ ପୋଛିବା ପାଇଁ କାଗଜ, କପେ କଫି । ସେଦିନ ମୋ ସହିତ ଜଣେ ଭାରତୀୟ ବନ୍ଧୁ ବି ଥିଲେ । ସେହି ତରୁଣୀଙ୍କୁ ଭାରତୀୟ ବନ୍ଧୁ ଜଣକ ଆଗରୁ ଜାଣିଥିଲେ । ସେ ତରୁଣୀଙ୍କର ପରିଚୟ ଆମ ସମସ୍ତଙ୍କ ସହ କରାଇ ଦେବାପରେ ସେ ଆମମାନଙ୍କ କଥାବାର୍ତ୍ତାରେ ଯୋଗଦେଲେ । ତରୁଣୀ ଇହୁଦୀ । କଥାବାର୍ତ୍ତା ଚାଲୁ ଚାଲୁ, ମୋତେ ଇହୁଦୀମାନଙ୍କ ଚାଲିଚଳନ ନେଇ କିଛି ଜ୍ଞାନ ଦେବା ଉଦ୍ଦେଶ୍ୟରେ ଜଣେ ବନ୍ଧୁ ତରୁଣୀଙ୍କୁ ପଚାରିଲେ—ଅନ୍ୟ ଧର୍ମର ଯୁବକଙ୍କୁ ଡେଟିଂ କରିବାରେ ତୁମର କିଛି ଆପତ୍ତି ଅଛି କି ?

ପ୍ରଶ୍ନଟି ଅପ୍ରତ୍ୟାଶିତ ଥିଲା; କିନ୍ତୁ ତରୁଣୀଟି ସେ କଥାକୁ ଭୁଲ୍ ବୁଝିଲେ ନାହିଁ, ଯଦିଓ ତାଙ୍କର ମୁହଁଟି କିଞ୍ଚିତ ରଙ୍ଗା ପଡ଼ିଯିବା ପରି ମନେହେଲା । ଆଖିରେ ଦୁଷ୍ଟାମି ରଖି ସେ ପଚାରିଲେ—ଆପଣମାନଙ୍କ ଭିତରୁ କିଏ ଡେଟିଂ ଚାହୁଁଛି ?

ବନ୍ଧୁ ମୋର ବ୍ୟଗ୍ର ହୋଇ ବୁଝାଇଦେଲେ ଯେ କଥାଟା ତାତ୍ତ୍ୱିକ । ଇହୁଦୀମାନଙ୍କ ଚାଲିଚଳନକୁ ଜାଣିବା ପାଇଁ କେବଳ ପଚରା ଯାଇଛି । ତରୁଣୀଟି ଗମ୍ଭୀର ହୋଇ କହିଲେ—ଡେଟିଂର ଚରମ ଉଦ୍ଦେଶ୍ୟ ହେଲା ପୁରୁଷ ସ୍ତ୍ରୀ ଭିତରେ ଘନିଷ୍ଠତା ବଢ଼ାଇବା ଓ ତା'ପରେ ଦୁହିଁଙ୍କର ବିବାହ କରିବା । ଇହୁଦୀ ଯୁବକ ବା ଯୁବତୀ ଅନ୍ୟ ଧର୍ମର ଯୁବକ ଯୁବତୀଙ୍କ ସହ ଡେଟିଂ କଲେ ଶେଷରେ ଇହୁଦୀ ଧର୍ମ ଛାଡ଼ି ଅନ୍ୟର ଧର୍ମକୁ ଗ୍ରହଣ କରିବାର ସମ୍ଭାବନା ସୃଷ୍ଟି ହୋଇପାରେ । ସେପରି ହେଲେ ଇହୁଦୀମାନଙ୍କ ସଂଖ୍ୟା ହ୍ରାସ ହେବାର ସମ୍ଭାବନା ରହିଛି । ତେଣୁ ସେ ଅନ୍ୟ ଧର୍ମର ଯୁବକଙ୍କ ସହିତ ଡେଟିଂ କରିବେ ନାହିଁ ।

ମୁଁ ପଚାରିଲି—ଇହୁଦୀମାନଙ୍କ ସଂଖ୍ୟା ହ୍ରାସ ହେଲେ କ୍ଷତି କ'ଣ ? ଯୁବକ ଯୁବତୀ ତ ନିଜ ମନମୁତାବକ ସ୍ୱାମୀ କି ସ୍ତ୍ରୀ ପାଇ ସୁଖରେ ରହିବେ, ମାନବର ସୁଖ ଶାନ୍ତି ପାଇଁ···।

ସେ ମୋ କଥା ମଝିରେ କହିଲେ—ମାନବପାଇଁ କେବଳ ବ୍ୟକ୍ତିଗତ ସୁଖ ଶାନ୍ତି ସବୁ କିଛି ନୁହଁ । ଈଶ୍ୱର ଇହୁଦୀ ଲୋକଙ୍କୁ, ଇହୁଦୀ ଧର୍ମକୁ, ସୃଷ୍ଟି କରିଛନ୍ତି ଏକ ବିଶେଷ ଉଦ୍ଦେଶ୍ୟ ନେଇ । ଆମମାନଙ୍କର ଇତିହାସ ପଢ଼ିଲେ ଆପଣ ଜାଣିବେ, କେତେ କଷ୍ଟ ଆମମାନଙ୍କୁ ସହିବାକୁ ପଡ଼ିଛି, କେତେ ଶାସକ ଆମମାନଙ୍କୁ ସଂସାରରୁ ମୂଳପୋଛ କରିବାପାଇଁ ଚେଷ୍ଟା କରିଛନ୍ତି; କିନ୍ତୁ ଈଶ୍ୱରଙ୍କ ଦୟାରୁ ତାଙ୍କର ଉଦ୍ଦେଶ୍ୟ ପୂର୍ତ୍ତି କରିବା ପାଇଁ ଆମେମାନେ ବଞ୍ଚିଛୁ, ସଂଖ୍ୟାରେ ବି ବଢ଼ିଛୁ, ମାନବ ସଭ୍ୟତାକୁ ଆମର ଲୋକେ ସୃଷ୍ଟି କରିଛନ୍ତି । କେତେ କଷ୍ଟରେ ଆମେ ଏବେ ଇସ୍ରାଏଲକୁ ପାଇଛୁ । ଆପଣ ଜାଣନ୍ତି ବାଇବେଲ୍‌ରେ ଲେଖା ହୋଇଥିବା ଅନୁଯାୟୀ ଆମେ ଶେଷରେ ଆମର ପୁଣ୍ୟ ଭୂମିକୁ ଫେରି ପାଇଛୁ । ସେଠି ରହି ଆମେ ସାରା ଏସିଆ ଓ ଆଫ୍ରିକା, ଯେଉଁଠି ଶତାବ୍ଦୀ ଶତାବ୍ଦୀ ଧରି ଲୋକେ ଅଜ୍ଞାନାନ୍ଧକାରରେ ରହିଛନ୍ତି, ସେମାନଙ୍କୁ ଆଲୋକ ଦେବୁ । ସେମାନଙ୍କୁ ଶିଖାଇବୁ ଯେ ଧର୍ମ ସହିତ ବିଜ୍ଞାନରେ କୌଣସି ଦ୍ୱନ୍ଦ୍ୱ ନାହିଁ । ଇହୁଦୀ ଲୋକେ ଯେତିକି ଧାର୍ମିକ ସେତିକି ବିଜ୍ଞାନୀ ମଧ୍ୟ । ଆଉ ମଧ୍ୟ ସେମାନେ ଆମଠୁ ଶିଖିବେ, ଅହିଂସ ସାମ୍ୟବାଦ, ଶିଖିବେ ମାନବ ପ୍ରଯତ୍ନରେ କିପରି ମରୁଭୂମି, ରୁକ୍ଷ ପର୍ବତ ମଧ୍ୟ ଶସ୍ୟଶ୍ୟାମଳ ହୋଇପାରେ ।

ମୁଁ ଇହୁଦୀ ଧର୍ମ ନେଇ ଆଗରୁ କିଛି ପଢ଼ିଥିଲି । ସେହି ତରୁଣୀ ଉଦ୍‌ବୁଦ୍ଧ ହୋଇ ଯାହା କହୁଥିଲେ, ବେନଗୁରିଅନ୍ ସେହି କଥାକୁ ତାଙ୍କ ଆତ୍ମଜୀବନୀରେ ଲିପିବଦ୍ଧ କରିଛନ୍ତି । ତରୁଣୀଙ୍କପାଇଁ ପ୍ରେରଣାର ସ୍ରୋତ ସେଇ ବହିଟିଇ ହୋଇ ପାରିଥାଏ ।

ଟରଣ୍ଟୋ ବିଶ୍ୱବିଦ୍ୟାଳୟରେ ଇହୁଦୀ ଛାତ୍ରମାନେ ଖୁବ୍ ସଂଘବଦ୍ଧ । ଅଧିକାଂଶ ଛାତ୍ର Y. M. H. A. ର ସଭ୍ୟ । Y. M. H. A. ର ଶାଖା ଉତ୍ତର ଆମେରିକାର ପ୍ରାୟ ପ୍ରତ୍ୟେକ ସହରରେ ଅଛି । ଏହି ସଂଘର ଉଦ୍ଦେଶ୍ୟ ହେଲା, ଇହୁଦୀ ଯୁବକ ଓ ଯୁବତୀମାନଙ୍କୁ ସେମାନଙ୍କ ଧର୍ମଶାସ୍ତ୍ର ଓ ନିୟମାବଳୀ ସହିତ ପରିଚିତ କରାଇବା, ସେମାନଙ୍କ ହୃଦୟରେ ଇହୁଦୀ ସଂସ୍କୃତି ପ୍ରତି ଆଗ୍ରହ ସୃଷ୍ଟି କରିବା, ଆମେରିକା ଓ କାନାଡ଼ାର ସଂଖ୍ୟାଗରିଷ୍ଠ ଖ୍ରୀଷ୍ଟିୟାନ୍‌ମାନଙ୍କ ଧର୍ମରେ ଦୀକ୍ଷିତ ହୋଇ ସେମାନେ ଯେପରି ଲୋପ ପାଇବେନି, ସେଥିପ୍ରତି ଦୃଷ୍ଟି ଦେବା । ଇହୁଦୀ ପର୍ବପର୍ବାଣୀରେ ଇହୁଦୀ ଯୁବକ ଯୁବତୀମାନଙ୍କୁ ଆଗ୍ରହାନ୍ୱିତ କରାଇବା, ଏପରିକି ଦରକାର ପଡ଼ିଲେ ସେମାନଙ୍କର ଏକତା ପାଇଁ ନୂଆ ନୂଆ ପର୍ବ ସୃଷ୍ଟିକରିବା ମଧ୍ୟ Y. M. H. A. ର କାର୍ଯ୍ୟ । ଗୋଟିଏ ଉଦାହରଣ ଦେଉଛି, ଖ୍ରୀଷ୍ଟମାସରେ ଟରଣ୍ଟୋ ସହର ଏକ ଭିନ୍ନ

ରୂପ ନିଏ । ମାସେ ପୂର୍ବରୁ ସ୍କୁଲରେ ଛାତ୍ରମାନଙ୍କୁ ଯୀଶୁଖ୍ରୀଷ୍ଟଙ୍କ ମହିମା ନେଇ ଗଳ୍ପ ବହି ପଢ଼ିବାକୁ ଦିଆଯାଏ, ପେଣ୍ଟିଂ କରିବାକୁ କୁହାଯାଏ, ସେହି ସଂକ୍ରାନ୍ତରେ ସିନେମା ମଧ୍ୟ ଦେଖାଯାଏ । ଖ୍ରୀଷ୍ଟିୟାନମାନେ ପରସ୍ପରକୁ ଉପହାର ଦିଅନ୍ତି, ପିଲମାନଙ୍କ ପାଇଁ ଘରକୁ ପାଇନ୍ ଜାତୀୟ ଛୋଟ ଛୋଟ ଗଛ ଆଣି, ଆଲୋକମାଳାରେ ତାକୁ ସଜ୍ଜିତ କରି ସେହି ଗଛମୂଳରେ ଉପହାର ସବୁ ରଖି ଦିଅନ୍ତି । ଗଛମୂଳରେ ରହେ ସାରା ପରିବାର ପାଇଁ ପରସ୍ପରକୁ ଦେଇଥିବା ସବୁ ଉପହାର । ଉତ୍କାଣ୍ଠ ହୋଇ ଭୋଜିଭାତ ବି କରନ୍ତି । ଏଇ କେତେଦିନ ଇହୁଦୀ ଶିଶୁମାନଙ୍କର ମାନସିକ ଅଶାନ୍ତି ଅବର୍ଣ୍ଣନୀୟ । ଏକରେ, ଯୀଶୁଙ୍କୁ ମାରିଥିବାରୁ ଇହୁଦୀ ଜାତିକୁ ଅପରାଧୀ ବୋଲି ଧରିନିଆଯାଏ । ତା'ଛଡ଼ା, ଭୋଜିଭାତ, ଆଲୋକମାଳା, ଉପହାର ଦିଆନିଆର ପ୍ରଲୋଭନକୁ, ସମ୍ଭାଳିବା ଦୁଃସାଧ୍ୟ ହୋଇପଡ଼େ । ଶେଷରେ ଇହୁଦୀମାନେ ଭାବିଚିନ୍ତି ଠିକ୍ ଖ୍ରୀଷ୍ଟମାସବେଳକୁ ସେମାନଙ୍କର ଧର୍ମର ଘଣଗୀତ ଗାଇବାପାଇଁ ପର୍ବଟିଏ ସୃଷ୍ଟି କଲେ । ବହୁଦିନ ତଳେ ଯେତେବେଳେ ଇହୁଦୀମାନେ ଇସ୍ରାଏଲ୍‌ରେ ଥିଲେ, ଯେତେ-ବେଳେ ଡିସେମ୍ବର ମାସରେ, ସେମାନଙ୍କ ରାଜ୍ୟ ଉପରେ ଶତ୍ରୁ ଆକ୍ରମଣ ହୋଇଥିଲା ଓ ସେମାନେ ସେହି ଘୋର ଯୁଦ୍ଧରେ ଜିତିଥିଲେ । ଜିତିବା ପରେ ଇସ୍ରାଏଲକୁ ଆଲୋକ-ମାଳାରେ ସୁସଜ୍ଜିତ କରି ସେମାନେ ଈଶ୍ୱରଙ୍କୁ ତାଙ୍କର କୃତଜ୍ଞତା ଜଣାଇଥିଲେ । ସେହି ଘଟଣାଟିକୁ ମନେ ପକାଇ ଉତ୍ତର ଆମେରିକାର ଇହୁଦୀମାନେ ଆଜିକାଲି ଡିସେମ୍ବର ମାସରେ ପର୍ବଟିଏ ପାଳୁଛନ୍ତି । ଯେଥିରେ ଠିକ୍ ଖ୍ରୀଷ୍ଟିୟାନ୍‌ମାନଙ୍କ ଭଳି ଦିଆ ନିଆ ଆନନ୍ଦ ଉତ୍ସବ, ଭୋଜିଭାତ । ଇହୁଦୀମାନଙ୍କର ମନ ସମ୍ଭାଳି ପଡ଼ିଲା ଏହି ଉତ୍ସବର ସୃଷ୍ଟି ପରେ । ପଡ଼ୋଶୀଘରର ଖ୍ରୀଷ୍ଟିୟାନ ପର୍ବ ଦେଖିବାକୁ ଆଉ ଉତ୍ସାହ ରହିଲା ନାହିଁ ଇହୁଦୀ ଶିଶୁଙ୍କର । ବାପ ମା'ମାନେ ଶାନ୍ତିରେ ରହି ପାରିଲେ ଏହି କେତେ ଦିନ ।

ସେଦିନର ଇହୁଦୀ ତରୁଣୀଟି କଲେଜର ଦ୍ୱିତୀୟ ବର୍ଷର ଛାତ୍ରୀ ମାତ୍ର; କିନ୍ତୁ ଇହୁଦୀ ଶାସ୍ତ୍ର, ଇତିହାସ ଉପରେ ତାଙ୍କର ଚର୍ଚ୍ଚା ଓ ଜ୍ଞାନ ଦେଖି ମୁଁ ବିସ୍ମିତ ହୋଇଗଲି । ହିନ୍ଦୁ ଯୁବକ ଯୁବତୀମାନେ ସେମାନଙ୍କର ଶାସ୍ତ୍ର ଉପରେ ଆଜିକାଲି ଆଉ ଚର୍ଚ୍ଚା କରୁଛନ୍ତି କି ? ମନସ୍ତତ୍ତ୍ୱର ଅଧ୍ୟାପକ ଡଃ ଅର୍ଜ୍ଜୁନ ପୁରୋହିତ, ଟରଣ୍ଟୋଠୁ ଅଳ୍ପ ଦୂରରେ କିଙ୍ଗସ୍‌ଟନ ସହରରେ, ରହନ୍ତି ସପରିବାରେ । ଟରଣ୍ଟୋରେ ଥିବାବେଳେ, ଓଡ଼ିଆରେ କଥାବାର୍ତ୍ତା କରିବାପାଇଁ ସୁବିଧା ଟିକିଏ ଲାଗି, ଆମେମାନେ ପାଖଆଖ ସହରକୁ ଯାଉଥିଲୁ । ଏହିପରି ଭାବେ ଡଃ ପୁରୋହିତଙ୍କୁ ଦିନେ ଆମେ ଆବିଷ୍କାର କଲୁ । ଥରେ ତାଙ୍କ ସହିତ ରାମାୟଣ ମହାଭାରତ କଥା ପଡ଼ିଥିଲା । ସେ କହିଲେ ଯେ, ଆଜିକାଲିକାର ଛାତ୍ରଛାତ୍ରୀମାନେ ରାମାୟଣ ମହାଭାରତ ପଢ଼ନ୍ତି ନାହିଁ । ଅଧିକାଂଶ ଶିକ୍ଷିତ ପରିବାରରେ ଏହି ଗ୍ରନ୍ଥ ଦୁଇଟି ପଢ଼ିବାର ପରମ୍ପରା ଆଉ ନାହିଁ । 'ଦସ୍ୟୁ ରତ୍ନାକର୍,' 'ନରବଳି', ନହେଲେ ବା 'ନାନା' ଏମାନଙ୍କର ସ୍ଥାନ ନେଇଛି ।

କ୍ଲାସରେ ମନସ୍ତତ୍ତ୍ୱ ପଢ଼ାଇବାବେଳେ, ପୁରାଣରୁ କୌଣସି ଉଦାହରଣ ଦେଲେ, ପିଲମାନେ ଅଧ୍ୟାପକଙ୍କ ମୁହଁକୁ ବଲ ବଲ କରି ଖାଲି ଚାହାଁନ୍ତି, କିଛି ବୁଝି ପାରନ୍ତି ନାହିଁ; ଅଥଚ ଉତ୍ତର ଆମେରିକା ଓ କାନାଡ଼ାରେ ପିଲମାନଙ୍କୁ ବାଇବେଲ୍ ନେଇ ଚିକିନିଖି ତଥ୍ୟ ଓ ଗଳ୍ପ ଶିକ୍ଷା ଦିଆଯାଏ । ପ୍ରତି ସପ୍ତାହରେ ଚର୍ଚ୍ଚରେ ଅନ୍ତତଃ ପକ୍ଷେ ନିଶ୍ଚେ । ପୃଥିବୀର ସଂଗଠିତ ଧର୍ମଗୁଡ଼ିକ ତୁଳନାରେ ହିନ୍ଦୁ ଧର୍ମର ଏହି କଥାଟି ହେଉଛି ବଡ଼ ଦୁର୍ବଳତା । ପୁରୁଣା ବିଧିଗୁଡ଼ାକ ଚାଲିଯାଉଛି, ଯେଉଁଗୁଡ଼ିକ ପରିବର୍ତ୍ତେ ନୂଆ ବିଧିର ଦର୍ଶନ ନାହିଁ, ଭାରତର ଶିକ୍ଷିତ ଲୋକେ ମୋଟରେ ଧର୍ମକୁଇ ନିଷ୍ପ୍ରୟୋଜନ ବୋଲି ଭାବୁଛନ୍ତି । ତେଣେ କିନ୍ତୁ ଇହୁଦୀ ବାପା ମା ସନ୍ତାନକୁ ନିୟମାବଲୀ ଓ ତାହା ଉପରେ ଭାଷ୍ୟ (Torah) ସହିତ ପରିଚିତ କରାଇବାପାଇଁ ବହୁ ନୂଆ ଉପାୟ, ପ୍ରୟୋଗ କରିବାରେ ବ୍ୟସ୍ତ । କେଉଁ କାଳରେ କେଜାଣି—ସେହିଟା ନିଶ୍ଚୟ ଏକ ଅଶୁଭ କାଳ ହୋଇଥିବ—ଭାରତର ଧର୍ମ ଓ ସଂସ୍କୃତିର ପ୍ରଚାରକମାନେ ଭାବିଲେ, ଯେ ଯେଉଁ ମାର୍ଗରେ ଯାଉଛ ଯାଅ, ସବୁ ନଦୀ ପାଇଁ ତ ସେହି ଗୋଟିଏ ସମୁଦ୍ର, ସେହିପରି ସବୁ ପନ୍ଥା ପାଇଁ ସେହି ଏକ ଈଶ୍ୱର ! ଏପରି ଥରେ ଭାବିବା ପରେ ଆଉ ପ୍ରଚାର ନ ହେବାଇ ସ୍ୱାଭାବିକ । ତେଣିକି ଏକ ବ୍ରହ୍ମ ସହିତ ସାପ, ବେଙ୍ଗ, ଘୁରପୋକ, ଡାହାଣୀ, ଭୂତ, ଶିଳ, ଶିଳ୍ପପା ସବୁ ରହିବେ—ସମସ୍ତଙ୍କ ପାଇଁ ପ୍ରଶସ୍ତ ମାର୍ଗ । ଏପରି ଦୁର୍ବଳତା ଆସିବାପରେ, ଭାରତୀୟ ସମାଜର ଗୋଟିଏ ବଡ଼ ଭାଗ—ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ 'ତଳଶ୍ରେଣୀ'ର ଲୋକମାନେ ମୂଳ ଭାରତୀୟ ସଂସ୍କୃତିର ବାହାରେ ରହିଗଲେ । ଅନ୍ୟାନ୍ୟ ଧର୍ମର ପ୍ରଚାରକମାନେ ହିନ୍ଦୁ ସମାଜର ଏହି ଅବହେଳିତ ଅଂଶଟି ଉପରେ ଆଖି ପକାଇ କ'ଣ କ'ଣ କରୁଛନ୍ତି, ତାହା ଏଠି ପୁଣି ଲେଖିବା ନିଷ୍ପ୍ରୟୋଜନ ।

ଯେତେବେଳେ ବା ଦେଖି ଶିଖି, କେହି କେହି ହିନ୍ଦୁ ପ୍ରଚାରକ ବାହାରୁଛନ୍ତି, ସେମାନେ ଦୁର୍ଭାଗ୍ୟକୁ ହିନ୍ଦୁ ଧର୍ମର ନିହାତି ଗୌଣ ଅଂଶ ଉପରେ ଜୋର ଦେଉଛନ୍ତି, ଯେପରିକି ଚିତା, ତିଳକ, ଯୋଗା, ଚୂଟି, ଜାତି, ଇତ୍ୟାଦି । ଏହି ପ୍ରଚାରକମାନଙ୍କ ଯୋଗୁଁ ଲୋକେ ଗୌଣ କଥାକୁ ତ ଛାଡ଼ୁଛନ୍ତି, ତା' ସହିତ ମୂଳ ଓ ମୁଖ୍ୟ କଥାକୁ ମଧ୍ୟ ଅଦରକାରୀ ବୋଲି ଭାବୁଛନ୍ତି । କିଛିଦିନ ତଳେ ଜଣେ ତରୁଣ, ହିନ୍ଦୁଧର୍ମର ଜଣେ ବିଖ୍ୟାତ "ପ୍ରଚାରକ"ଙ୍କ ପାଖକୁ କିଛି ଆଲୋଚନା କରିବାକୁ ଯାଇଥିଲେ । ଆଲୋଚନା ମଝିରେ ସନ୍ନ୍ୟାସୀ ବିରକ୍ତ ହୋଇ ତାଙ୍କୁ କହିଲେ—ତୁମେ ହିନ୍ଦୁ ? ଫୁଲପ୍ୟାଣ୍ଟ ପିନ୍ଧିଛ, ଚୂଟି ରଖିନାହଁ, ଫେରେ ନିଜକୁ କହୁଛ ହିନ୍ଦୁ ? କହିବା ବାହୁଲ୍ୟ ଯେ ସେହି ତରୁଣ, ମନରେ ଅଶାନ୍ତି ଓ ଗ୍ଲାନି ରଖି ଫେରିଆସିଲେ ତାଙ୍କ ପାଖରୁ । ମୋତେ ଯେପରି ଜଣା ପଡ଼ୁଛି, ଭାରତର "ଉଚ୍ଚଶ୍ରେଣୀ"ର ଲୋକେ "ଚିତା, ତିଳକ, ଯୋଗା,

ଚୃଷ୍ଟୀ ଓ ଜାତି" ମନୋବୃତ୍ତିରୁ ନିଜକୁ ଆଉ ମୁକୁଳାଇ ପାରିବେ ନାହିଁ । ଭାରତୀୟ ସଂସ୍କୃତି ଏହି "ଉଚ୍ଚ ଶ୍ରେଣୀ"ର ଲୋକଙ୍କଠୁ ଆଉ ଅଧିକା କିଛି ଆଶା କରିବା ମଧ୍ୟ ଉଚିତ ନୁହେଁ । ଏମାନେ ଯାହା ଦେବା କଥା ଦେଇ ସାରିଲେଣି । ବହୁ କର୍ଷିତ ଜମିପରି ଏହି "ଉଚ୍ଚଜାତି"ର ଲୋକେ ଆଜିକାଲି ହୋଇଯାଇଛନ୍ତି ଅନୁର୍ବର— ବନ୍ଧ୍ୟା । ଗତାନୁଗତିକତାର ଶିଗଡ଼ ଗୁଳା ଏମାନେ ଛାଡ଼ିବାକୁ ନାରାଜ । ଯଦି ଆଦିବାସୀ, ହରିଜନ ଓ ଅନ୍ୟାନ୍ୟ "ଅନୁନ୍ନତ" ଶ୍ରେଣୀ ଭିତରୁ ବଳିଷ୍ଠ ନେତୃତ୍ୱ ନ ବାହାରେ, ତାହାହେଲେ ଭାରତୀୟ ସଂସ୍କୃତିର ଭବିଷ୍ୟତ ଅନ୍ଧକାରମୟ ।



# ଶାନ୍ତି

ଟରଣ୍ଟୋରେ ପହଞ୍ଚିବା ପରେ ପ୍ରାୟ ମାସେ ଦୁଇମାସ ଯାଏ, "ଭୟଙ୍କର ମାନସିକ ଅବସାଦ ଓ ଅଶାନ୍ତିରେ ମୁଁ ରହୁଥାଏ ।" ସାଙ୍ଗରେ 'ଧର୍ମପତ୍ନୀ ଓ ପୁଅ ଯାଇଥିଲେ ମଧ୍ୟ ଚତୁର୍ଦ୍ଦିଗରେ ନୂତନ ବାତାବରଣ, ନୂଆ ଲୋକଙ୍କୁ ଦେଖି, ମନରେ ମୋର ଏହିପରି ହଁଡୋଗ୍ରାହି ଭାବ ଓ ଅବସାଦ ଆସିଥାଏ । ଏହି ନୈରାଶ୍ୟଜନିତ ନେଇ ଗୋଟିଏ ଘଟଣା କହିବି, ଯାହା ମୁଁ ଟରଣ୍ଟୋରେ ଥିବା ଭିତରେ ନିଉୟର୍କ ସହରରେ ଘଟିଥିଲା । ସରଳ ଓ ଗ୍ରାମ୍ୟ ସଭ୍ୟତାରୁ କୌଣସି ଖୁବ୍ ଉନ୍ନତ ଓ ଜଟିଳ ସଭ୍ୟତାକୁ ଗଲେ; ଜଣେ ଲୋକର ମନରେ ବହୁ ପ୍ରକାର ପ୍ରତିକ୍ରିୟା ସୃଷ୍ଟି ହୁଏ, ଯାହାର ସାମଗ୍ରିକ ରୂପ ହେଲା ଅବସାଦ, ଗ୍ଲାନି, ଉତ୍ସାହହୀନତା ଓ ନୈରାଶ୍ୟଜନିତା । ଆଫ୍ରିକାର କୌଣସି ଏଗ୍ରେରିଆ ରାଜ୍ୟରୁ, ସେହି ଦେଶର ଜାତିସଂଘ ବିଭାଗର କର୍ମଚାରୀ ହୋଇ ଜାତିସଂଘ କାର୍ଯ୍ୟାଳୟକୁ ଜଣେ ଆଫ୍ରିକାନ ନିଗ୍ରୋ ଯୁବକ ତାଙ୍କର ସ୍ତ୍ରୀ ଓ ଏକମାତ୍ର ସନ୍ତାନକୁ ଧରି ନିଉୟର୍କ ଆସିଥିଲେ । କୋଡ଼ିଏ କି ପଚିଶି ତାଲାର କୌଣସି ହୋଟେଲ କକ୍ଷରେ ସେ ସୁଇଟିଏ ଭଡ଼ା ନେଇଥାନ୍ତି । ସବୁ ସୁବିଧା—ଶୋଇବା ଘରକୁ ଲାଗି ସ୍ନାନାଗାର; ସ୍ୱତନ୍ତ୍ର ରୋଷେଇଘର, ରାନ୍ଧିବାପାଇଁ କୁକିଂରେଞ୍ଜ୍, ରେଫ୍ରିଜେରେଟର୍, ହୋଟେଲ ତଳେ ଲୁଗା ସଫା କରିବାପାଇଁ ସ୍ୱୟଂଚାଳିତ ଲଣ୍ଡ୍ରୀ, ହୋଟେଲର ଅନତିଦୂରରେ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍, ସେଇଁଠିକୁ ଗଲେ କୋବଠୁ ଆରମ୍ଭ କରି କୁକୁଡ଼ା, ପାନିଆଠୁ, ଆରମ୍ଭ କରି ସେଫ୍ଟିପ୍ଲେଟର ସବୁ ମିଳିବ । ଆଉ ଘରର ଝରକା ଖୋଲିଦେଲେ, ନିଉୟର୍କର ଆକାଶଚୁମ୍ବୀ କୋଠାଗୁଡ଼ିକର ଦୃଶ୍ୟ ଲାଗିବ ତୁମେ ଯେପରି ସତରେ ପୁରାଣ ବର୍ଣ୍ଣିତ ଇନ୍ଦ୍ରପୁରୀରେ ରହିଛ । ଏହିପରି ଗୃହଟିରେ, ସେହି ଜାତିସଂଘ ବିଭାଗର ଆଫ୍ରିକାନ କର୍ମଚାରୀ, ସସ୍ତ୍ରୀକ ରହିବାକୁ ଲାଗିଲେ । ସକାଳୁ ବ୍ରେକଫାଷ୍ଟ ଖାଇ ସେହି ଭଦ୍ରବ୍ୟକ୍ତି ଜାତିସଂଘର କାର୍ଯ୍ୟାଳୟକୁ କାମ କରିବାକୁ ଚାଲିଯାନ୍ତି, ସୁଇଟରେ ରହନ୍ତି ତାଙ୍କର ଯୁବତୀ ସ୍ତ୍ରୀ ଓ ସନ୍ତାନଟି । ସ୍ତ୍ରୀ ଇଂରାଜୀ ଜାଣି ନଥିଲେ, ଜାଣିଥିଲେ, ବା କାହୁଁ ସେ ପାଆନ୍ତେ ଆଫ୍ରିକା ଲୋକଙ୍କ ସରଳତା, ଆଫ୍ରିକାର ଶ୍ୟାମଳ ବନାନୀ, ଉଚ୍ଚ ଗିରିଶିଖର ଓ ତାଙ୍କ ଉପଜାତିର ନୃତ୍ୟ, ସଂସ୍କାର, ପୂଜାପାର୍ବଣ ? ସେ ଝୁରି ହେଲେ ଆଫ୍ରିକାର ଏହିସବୁ

କଥାକୁ । ତେବେ ତାଙ୍କର ଘୋର ଗୃହକାତରତାର ପରିଣତି ହେଲା ଏହିପରି—ସେ ଝରକା ଖୋଲି କିଛିସମୟ ରାସ୍ତାକୁ ନିରୀକ୍ଷଣ କରିବା ପରେ, ଖୁବ୍ ତଳେ ପିଚ୍ ରାସ୍ତା ଉପର ଦେଇ ଯାଉଥିବା ଅସଂଖ୍ୟ କାର୍‌ଗୁଡ଼ିକ ଉପରକୁ ତାଙ୍କର ପିଲାଟିକୁ ପକାଇ ଦେଲେ । ରାସ୍ତା ଉପରକୁ, ଶୂନ୍ୟରୁ ପଡ଼ୁଥିବା ପିଲାକୁ ଲୋକେ ଗୁହାଁ ଗୁହାଁ, କୃଷ୍ଣମୋହନ କର୍ମିକ୍ଷଙ୍କ ସ୍ତ୍ରୀ ମଧ୍ୟ ତଳକୁ ଡେଇଁ ପଡ଼ିଲେ । ତାଙ୍କର ଗୃହକାତରତା ମାନସିକ ଅବସାଦ ଓ ନିଜ ଦେଶର ବାତାବରଣକୁ ଛାଡ଼ି ନିଃସଙ୍ଗରେ ଆସି ରହିବାର ଏହି ହୋଇଥିଲା ପରିଣତି ।

ତେଣୁ ବିଦେଶରେ ହତୋତ୍ସାହ ହେବା ଉଚିତ ନୁହେଁ । ଘରଛାଡ଼ି ଆସିଥିଲେ ମଧ୍ୟ ପରିସ୍ଥିତି ସହ ନିଜକୁ ଖାପ ଖୁଆଇ ଚଳିବା ବୁଦ୍ଧିମତ୍ତାର ପରିଚ୍ୟାୟକ ଇତ୍ୟାଦି, ଉପଦେଶାତ୍ମକ ବାକ୍ୟସବୁ ଶୁଣିବାକୁ ହୁଏ; କିନ୍ତୁ ଏହିପରି ସବୁ ନିଜକୁ ସଜାଡ଼ୁ ସଜାଡ଼ୁ ଅଜାଣତରେ ମନ ଦୁଃଖିତ ହୋଇଯାଏ । ସେଦିନ ଏହିପରି ଅବସ୍ଥାରେ, ମୁଁ ମେଜର ଷ୍ଟ୍ରିଟ୍‌ର ଘର ଭିତରେ ନ ରହି ବୁଲେ ଉଦ୍‌ଭ୍ରାନ୍ତ ପରି, ମନଟାକୁ ସଜାଡ଼ିବା ପାଇଁ । କ୍ୟାମ୍ପସ୍‌କୁ ଲାଗି ପୂର୍ବଦିଗକୁ ରାସ୍ତାଟିଏ, ରାସ୍ତାଟି ଡେଇଁଲେ ଟରଣ୍ଟୋର ପ୍ରସିଦ୍ଧ କୁଇନ୍‌ସ ପାର୍କ, ପାର୍କର ଅନତିଦୂରରେ ଅଣ୍ଟେରିଓ ପ୍ରଦେଶର ପାର୍ଲିଆମେଣ୍ଟ କୋଠା । ସେଥିପାଇଁ ଏହି ପାର୍କରେ ନାନା ପାର୍ଟିର ମିଟିଂ ବି ହୁଏ, ଇଣ୍ଡିଆମାନଙ୍କର ମିଟିଂ ମଧ୍ୟ । ଏହି ପ୍ରାୟ ବୃତ୍ତାକାର ପାର୍କକୁ, ଘେରିଦିଗରେ ଥିବା ରାସ୍ତା, ଗୋଟିଏ ହାଇୱେ ସହିତ ସଂଯୁକ୍ତ । ତେଣୁ ଅହର୍ନିଶି ଏହି ରାସ୍ତାରେ ଅସଂଖ୍ୟ କ୍ଷିପ୍ରଗାମୀ କାର୍ । ପାର୍କ ମଝିରେ ବସି ଏହି ଦ୍ରୁତଗାମୀ କାର୍‌ଗୁଡ଼ିକୁ ଚାହିଁଲେ, ମୁଣ୍ଡ ବୁଲାଇ ହୋଇଯାଏ, ମନେହୁଏ ଯେପରି ସାପ ସଂସାର ବୁଲୁଛି । ଅଶାନ୍ତ ହୋଇ ସେଦିନ ମୁଁ ସେହି ପାର୍କରେ ବସିଥାଏ । ପାର୍କ ଭିତରେ ବହୁ କିସମର ଗଛଗୁଡ଼ାକରୁ ବହୁରଙ୍ଗୀ ପତ୍ର ଝଡ଼ି ପଡ଼ୁଥାଏ । ସେହିଦିନ ସକାଳୁ ପଡ଼ି ପଡ଼ି ଗଛମୂଳଗୁଡ଼ିକରେ ପତ୍ର ସବୁ ବଳାଗଣ୍ଡି ଯାଏ ଜମା ହୋଇ ଗଲେଣି । ବେଞ୍ଚଟିଏରେ ମୁଁ ବସି ଅପରିଷ୍କାର, କୁତ୍ସିତ ପୂତିଗନ୍ଧମୟ, ତଥାପି ଆଦରଣୀୟ କଟକ ସହରର କଥା ଭାବୁଥାଏ । ପକ୍ଷ ଲାଗି ଯାଇଥିଲେ ଇନ୍ଦ୍ରପୁରୀ ସେହି ଟରଣ୍ଟୋକୁ ଛାଡ଼ି ମୁଁ କଟକକୁ ଉଡ଼ି ଆସି ଯାଇଥାନ୍ତି । ଉତ୍ତରରୁ ଅଳ୍ପ ଅଳ୍ପ ଶୀତପବନ ବୋହୁଥାଏ । ମନକୁ ଆସୁଥାଏ—ଓଭର୍‌କୋଟଟିଏ କିଣିବାକୁ ହେବ—ଶୀତ ପଡ଼ିଆସିଲାଣି । ପାର୍କରେ ଅନ୍ୟାନ୍ୟ ବେଞ୍ଚରେ ବହୁ ଯୁବକ-ଯୁବତୀ ବସି ଗପୁଥାନ୍ତି । ଅଧିକାଂଶଙ୍କ ପାଖରେ ଓଭରକୋଟ୍, ସେଗୁଡ଼ିକୁ ସେମାନେ ହାତରେ ଗୁଡ଼ାଇ ଧରିଥାନ୍ତି, କେହି କେହି କୋଟ ପିନ୍ଧି ବୋତାମଗୁଡ଼ିକୁ ଖୋଲି ରଖିଥାନ୍ତି । ମୁଁ ବସିଥିବା ବେଞ୍ଚ୍‌ରେ ମୁଁ ଏକୁଟିଆ । କିଛି ସମୟ ପରେ ସୁଟ୍, ଓଭର କୋଟ୍, ଇତ୍ୟାଦି ପିନ୍ଧି ଯୁବକଟିଏ ମୋ ପାଖକୁ ଆସିଲେ—ମୁଁ ବସି ପାରେ କି ? ବୋଲି ମୋତେ ସ୍ୱଗତୋକ୍ତି ପରି ବାକ୍ୟଟିଏ କହି ବେଞ୍ଚରେ ବସିବାପରେ ସେ ମୋତେ ଏଣୁ ତେଣୁ

କ'ଣ ପଚାରିବାକୁ ଲାଗିଲେ, ଯେପରିକି ଆପଣ ବୋଧେ ଭାରତୀୟ ? ଶୀତ କ'ଣ ବେଶି ଜଲଦି ପଡ଼ିବ ? ଏହିପରି । ସେ ଏଣେ ତେଣେ ଚାହିଁବାବେଳକୁ ତାଙ୍କର ଦୃଷ୍ଟିପଥକୁ ଶାଢ଼ୀ ପରିହିତା ଜଣେ ଭାରତୀୟ ମହିଳା ଆସିଲେ । ମୁଁ ମଧ୍ୟ ସେହି ଆଡ଼କୁ ଚାହିଁଥିଲି । ଭାରତୀୟ ମହିଳାଙ୍କୁ ଦେଖି ଦେଖି ମୁଁ ଯେପରି ଆଶ୍ୱାସନା ପାଇଲି, ମନେହେଲା ସଂସାର ଠିକ୍ ଚାଲିଛି । ସେହି ମହିଳା ଜଣକ ଦୂରକୁ ଯାଇ ଅଦୃଶ୍ୟ ହୋଇଯିବା ପରେ ସେ ପଚାରିଲେ—ଆଚ୍ଛା ! ଆପଣଙ୍କ ଭାରତବର୍ଷରେ ପୁଅମାନେ ତ ସବୁବେଳେ ସୁଟ୍ ପିନ୍ଧନ୍ତି ଆମରି ପରି; କିନ୍ତୁ ସ୍ତ୍ରୀ ଲୋକମାନେ ସ୍କାର୍ଟ କି ସ୍ଲାକ୍ସ୍ କାହିଁକି ପିନ୍ଧନ୍ତି ନାହିଁ ଆମରି ସ୍ତ୍ରୀମାନଙ୍କ ପରି ? ପୂର୍ବରୁ ସେ ନିଜକୁ ଇହୁଦୀ ବୋଲି ପରିଚୟ ଦେଇଥାନ୍ତି ଓ ମୁଁ ମୂଳରୁ ଇହୁଦୀ ଧର୍ମ ବିଷୟରେ ଆଗ୍ରହାନ୍ୱିତ ଯୋଗୁଁ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ଇଚ୍ଛା କରୁଥାଏ । ତାଙ୍କର ପ୍ରଶ୍ନରେ ମୁଁ ଠିକ୍ କି ପ୍ରକାର ଉତ୍ତର ଦେବି ଠିକ୍ କରି ପାରିଲି ନାହିଁ । ପ୍ରଶ୍ନଟି ଅପ୍ରତ୍ୟାଶିତ ଥିଲା । କହିଲି—ଭୁଲ୍ କହିଲେ । ଭାରତରେ ପୁରୁଷମାନଙ୍କର ସାଧାରଣ ପରିଧାନ ପ୍ୟାଣ୍ଟ, ସାର୍ଟ କି ସୁଟ୍ ନୁହେଁ । ଆପଣେ ଯଦି ଭାରତ ଯିବେ, ତାହାହେଲେ ଦେଖିବେ ସେଠି ପୁରୁଷମାନେ ଧୋତି ପିନ୍ଧନ୍ତି, ଆଉ ସ୍ତ୍ରୀମାନେ ଶାଢ଼ୀ । ଇଂରେଜମାନଙ୍କ ଅମଳରେ ଏହି ପୁରୁଷମାନଙ୍କ ମଧ୍ୟରୁ ଦଳେ ଇଂରାଜୀ ଶିକ୍ଷାରେ ଶିକ୍ଷିତ ହୋଇ ସେମାନଙ୍କ ପୋଷାକ ପିନ୍ଧି କଲେଜ, କଚେରି ଅଫିସ, ଇତ୍ୟାଦି ଜାଗାକୁ ଗଲେ । ଶାସକମାନେ ପୋଷାକ ନ ପିନ୍ଧିଲେ ସେମାନଙ୍କର କଲେଜ କଚେରି, ଅଫିସରେ ଜାଗା ପାଇବା ସମ୍ଭବ ହେଉ ନ ଥିଲା । ସେହିଦିନୁ ଭାରତୀୟ ଶିକ୍ଷିତମାନଙ୍କ ମଧ୍ୟରେ ଏହି ପ୍ୟାଣ୍ଟ, ସାର୍ଟ ପିନ୍ଧିବାର ପରମ୍ପରା, ସେହି ପରମ୍ପରା ଏବେ ବି ଗଡ଼ି ଚାଲିଛି । ଇଂରେଜମାନଙ୍କ ଅମଳରେ ଭାରତୀୟ ସ୍ତ୍ରୀମାନେ ପୁରୁଷଙ୍କ ପରି କୋର୍ଟ, କଚେରି, ଅଫିସକୁ ଚାକିରି ପାଇଁ ଆସୁ ନ ଥିଲେ । ସେମାନେ ଦୋଳୁ ଆସୁ ଆସୁ ଭାରତ ସ୍ୱାଧୀନ । ତେଣୁ ସେତେବେଳେ ଆଉ ବିଦେଶୀ "ଶାସକମାନଙ୍କ" ନଜରକୁ ଚୁଟ ଜଟିବାର ପ୍ରଶ୍ନ ଉଠୁ ନ ଥିଲା । ଏହିପରି ଭାବେ ସେମାନଙ୍କୁ ଶାଢ଼ୀ ଛାଡ଼ିବାକୁ ପଡ଼ିଲା ନାହିଁ । ତେଣୁ କାନାଡ଼ାରେ ମଧ୍ୟ ଆପଣ ଭାରତୀୟ ସ୍ତ୍ରୀମାନଙ୍କ ଶାଢ଼ୀ ପିନ୍ଧିବାର ଦେଖିବେ । ମୋର ଉତ୍ତର ଓ ବିଶ୍ଳେଷଣରେ ସେହି ଯୁବକ ସନ୍ତୁଷ୍ଟ ହେବା ପରି ଜଣା ପଡ଼ିଲେ ନାହିଁ, ବୋଧେ ତାଙ୍କୁ ଯେପରି ଜଣା ପଡ଼ୁଥାଏ ଭାରତୀୟ ସ୍ତ୍ରୀମାନେ, ଭାରତର ପରମ୍ପରାର ଡିଣ୍ଡିମ ପିଟିବା ପାଇଁ, ନିଜ ଧର୍ମ ଓ ଦେଶର ସ୍ୱାତନ୍ତ୍ର୍ୟ ରକ୍ଷିବା ପାଇଁ, ଅନ୍ୟମାନଙ୍କୁ ଭାରତର ନିଷ୍ଠା ଦେଖାଇବା ପାଇଁ, ଶାଢ଼ୀ ପିନ୍ଧୁଛନ୍ତି, କିନ୍ତୁ ବାସ୍ତବରେ ସ୍କାର୍ଟ ଓ ବ୍ଲାଉଜ ପିନ୍ଧିବା ଇ ସହଜ ଓ ବେଶି ଆରାମପ୍ରଦ । ସେଦିନ କିନ୍ତୁ ସେହି ଯୁବକଟି ସହିତ ଭାରତ ପେନ କଥାବାର୍ତ୍ତା ହେବା ପରେ ମନରୁ ମୋର ଅବସାଦ ଘୁଞ୍ଚି ଯାଇଥିଲା ଓ ସେହି ସମୟରେ, କ୍ଷଣକପାଇଁ ମନକୁ ଆସିଥିଲା, ଧୋତି ଓ ପଞ୍ଜାବୀ ପିନ୍ଧି, ଗୀତାଟିଏକୁ ହାତରେ ଧରି, ଏହି କୁଇନ୍ସ ପାର୍କକୁ ଆସିଲେ କିପରି ହୁଅନ୍ତା !

କୌଣସି ବେଞ୍ଚରେ ବସି ହେଉ, ବା ପତ୍ର ଝଡ଼ୁଥିବା କୌଣସି ବୃକ୍ଷ ମୂଳରେ ବସି ହେଉ ଯଦି ଗୀତାର ଏକାଦଶ ଅଧ୍ୟାୟଟିକୁ ଉଚ୍ଚସ୍ୱରରେ ବୋଲୁଥାନ୍ତି, ଆଉ ଯଦି ଠିକ୍ ସେହି ସମୟରେ ସେହି ଇଣ୍ଡିଆନ ଯୁବକଟି ମୋତେ ଦେଖନ୍ତେ ! କିନ୍ତୁ ତା'ପରେ ମୋର ମନକଥା ମନରେ ହିଁ ରହିଗଲା, ମୁଁ ମୋର କାନାଡ଼ା ରହଣି କାଳରେ, ସନ୍ଧ୍ୟାରେ ଧୋତି ପିନ୍ଧି ବୁଲିନାହିଁ କି କୁଇନ୍ସ ପାର୍କରେ ଗୀତା ପଢ଼ିନାହିଁ । ମୋଠୁ ବିଦାୟ ନେବାବେଳେ ସେହି ଯୁବକ କହିଲେ—ଯାହା କହ, ଶାଢ଼ୀ ଖୁବ୍ ସୁନ୍ଦର ପୋଷାକ, ଶାଢ଼ୀରେ ଭାରତୀୟ ସ୍ତ୍ରୀମାନେ ଖୁବ୍ ସୁନ୍ଦର ଦିଶନ୍ତି । ତାଙ୍କ କଥା ଶୁଣି ମୋ ମନ ଖୁସି ହୋଇଗଲା । ଦେଶ ବାହାରକୁ ଗଲେ ନିଜ ଦେଶର ପ୍ରଶଂସା ଶୁଣିବାକୁ ଭଲ ଲାଗେ ।

ମୁଁ ଘରକୁ ଫେରି ଶ୍ରୀମତୀଙ୍କୁ କହିଲି—ଭୟଙ୍କର ଶୀତ ହେଲେ ବି (ଟରୋଣ୍ଟୋର କେତେଜଣ ଭାରତୀୟ ମହିଳା ଶ୍ରୀମତୀ ପହଞ୍ଚିବା ପରେ ପରେ ତାଙ୍କୁ ଡରାଇ ଦେଇଥାନ୍ତି !) ତୁମେ ଅନ୍ୟମାନଙ୍କ ପରି ସ୍କାର୍ଟ କି ସ୍ଲାକ ପିନ୍ଧିବ ନାହିଁ । ଅନ୍ୟାନ୍ୟ ଭାରତୀୟ ସ୍ତ୍ରୀଲୋକମାନେ କାନେଡ଼ିଆନ୍ ସ୍ତ୍ରୀ ଲୋକଙ୍କୁ ଅନୁକରଣ କରି, ଶୀତ ବରଫର ବାହାନା କରି, ସ୍ଲାକ୍ ପିନ୍ଧିଲେ ବି, ତୁମେ ସେପରି କରିବା ଉଚିତ ନୁହେଁ । ମନେରଖ, ଅମ ଦେଶର, ଆମେମାନେ ଜଣେ ଜଣେ ରାଷ୍ଟ୍ରଦୂତ । ଏହାପରେ ମୁଁ କୁଇନ୍ସ ପାର୍କରେ ଘଟିଥିବା ଘଟଣାଟି ତାଙ୍କ ଆଗରେ କହିଥିଲି ।

ଏହାପରେ, ବହୁବାର, ଏହି ଶାଢ଼ୀ ନେଇ ବହୁ କଥାବାର୍ତ୍ତା ଆମେମାନେ କାନାଡ଼ାର ଲୋକଙ୍କ ସହ ହୋଇଛୁ । ଶାଢ଼ୀ କିପରି ପିନ୍ଧା ଯାଏ, ତାହା ଅଣ୍ଟାରୁ କିପରି ଖସି ପଡ଼ୁନାହିଁ, ଇତ୍ୟାଦି କଥା ସେଠାକାର ସ୍ତ୍ରୀଲୋକଙ୍କ ପାଇଁ ପରମ ଆଶ୍ଚର୍ଯ୍ୟର ବିଷୟ ହୋଇ ରହିଗଲା, ଆମେ ବହୁବାର ବୁଝାଇବା ସତ୍ତ୍ୱେ ବି !

ନିଉୟର୍କରେ ହେଉଥିବା ବିଶ୍ୱମେଳା ଦେଖିବାପାଇଁ ଆମେମାନେ ଆମେରିକା ଯାଇଥିଲୁ । ନିଉୟର୍କରୁ ଓ୍ୱାଶିଂଟନକୁ ଯାଇ ପହଞ୍ଚି ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କ ଘରେ ଅତିଥି ହେଲୁ । ସେହି ଭଦ୍ରବ୍ୟକ୍ତି କ୍ୟାଥଲିକ୍ ବିଶ୍ୱବିଦ୍ୟାଳୟରେ ଗଣିତ ନେଇ ପି.ଏଚ. ଡି. ପାଇଁ ରିସର୍ଚ୍ଚ କରୁଥାଆନ୍ତି । ପୂର୍ବବଙ୍ଗର ପଳାତକ ବଙ୍ଗାଳୀ ସେମାନେ । ପୂର୍ବବଙ୍ଗର ବଡ଼ ଜମିଦାର ପରିବାରର ଲୋକ । ବର୍ତ୍ତମାନ କିନ୍ତୁ କର୍ପୂର ଯାଇ କନା ଟା ପଡ଼ିଛି । ଜମିଦାରମାନଙ୍କର ଉଦାର ମନୋବୃତ୍ତିରୁ ଯାହା କିଛିଟା ସେମାନଙ୍କଠି ରହିଯାଇଛି । ତାଙ୍କର ଶ୍ରୀମତୀ ରାଜନୀତି ବିଜ୍ଞାନରେ ବୋଧେ ଏମ. ଏ ପଢ଼ୁଥାଆନ୍ତି । ସେହିମାନଙ୍କ ଗୃହରେ ଅମେ ପ୍ରଥମ କରି ଇଂଜିନିୟରିଂ ଛାତ୍ର ପଞ୍ଜାବର ପୃଥ୍ୱୀ ଗାନ୍ଧୀ ଓ ତାଙ୍କର ଗାର୍ଲ ଫ୍ରେଣ୍ଡ ରୋଜମେରୀଙ୍କୁ ଦେଖିଲୁ । ଦୁହେଁ ଜର୍ମାନୀରୁ ଆମେରିକା ବୁଲି ଆସିଥାଆନ୍ତି । ଦୁହିଙ୍କର ପରିକଳ୍ପନା ଥାଏ, ପୃଥ୍ୱୀ ଇଂଜିନିୟରିଂ ଡିଗ୍ରୀ

ପାଇବାରେ ଓ ଶ୍ୱେଜମେଶ୍ୱ ସାହିତ୍ୟରେ ଗ୍ରାଜୁଏଟ୍ ହେବାପରେ, ଦୁହେଁ ବିବାହ କରିବେ । ଆମେ ଯେତେବେଳେ ସେମାନଙ୍କୁ ଦେଖିଲୁ, ସେତେବେଳେ ଶ୍ୱେଜମେଶ୍ୱ ଯେଠାକାର ସାଧାରଣ ଡ୍ରେସ ସ୍କର୍ଟ ଓ ବ୍ଲାଉଜ୍ ପିନ୍ଧିଥିଲେ; କିନ୍ତୁ ଶ୍ରୀମତୀଙ୍କ ସହିତ ପରିଚୟ ହେବାର କିଛିକ୍ଷଣ ପରେ ସେ ଶ୍ରୀମତୀ ଘୋଷ ଓ ମୋର ଶ୍ରୀମତୀଙ୍କ ଆଗରେ କହିଲେ—ମୁଁ ଶାଢ଼ୀ ପିନ୍ଧିବି, ମୋତେ ସ୍କର୍ଟ ଓ ବ୍ଲାଉଜ ଆଉ ଭଲ ଲାଗୁନାହିଁ ।

ଆମେମାନେ ଆଶ୍ଚର୍ଯ୍ୟ ହୋଇଗଲୁ, ତାଙ୍କର ଅପ୍ରତ୍ୟାଶିତ ଭାବାବେଗରେ । ସେ କିନ୍ତୁ କହି ଚାଲିଥାଆନ୍ତି—ମୁଁ ଯେତେବେଳେ ଜଣେ ଭାରତୀୟଙ୍କର ସ୍ତ୍ରୀ ହେବାକୁ ଯାଉଛି (ଅବଶ୍ୟ ଛଅ ବର୍ଷ ପରେ !) ସେତେବେଳେ ଜଣେ ଭାରତୀୟ ଗୃହିଣୀ ହିସାବରେ ମୁଁ ଶାଢ଼ୀ ପିନ୍ଧିବା ଉଚିତ । ଶାଢ଼ୀକୁ ଏବଠୁ ପିନ୍ଧିବା ଅଭ୍ୟାସ କଲେ କ୍ଷତି କଅଣ ?

ତାଙ୍କୁ ବୁଝାଇ ଦିଆଗଲା ଯେ ଭାରତରେ ବି ଝିଅମାନେ ସ୍କର୍ଟ ପିନ୍ଧନ୍ତି (ଆଉ ଆମେରିକା ଝିଅମାନଙ୍କୁ ଅନୁକରଣ କରି ସ୍କର୍ଟ, ସ୍ଲାକ୍ ପିନ୍ଧିବାକୁ ଭାରତୀୟ ଝିଅମାନେ ମହା ପ୍ରୋଗ୍ରେସିଭ ଭାବନ୍ତି !) ପୁଣି ଭାରତରେ ପଢ଼ୁଥିବା ଝିଅମାନଙ୍କୁ ସବୁପ୍ରକାର ଡ୍ରେସ ମାଫ୍ । ତଥାପି ସେ କହିଲେ, ଆପଣମାନଙ୍କର ଶ୍ରୀମତୀମାନେ ଯେତେବେଳେ ଶାଢ଼ୀପିନ୍ଧି ଏତେ ସୁନ୍ଦର ଦିଶୁଛନ୍ତି, ସେତେବେଳେ ମୋତେ ସ୍କର୍ଟ ବ୍ଲାଉଜ ପିନ୍ଧାଇ ଆପଣମାନେ କାହିଁକି ଅସୁନ୍ଦର କରି ରଖିବାକୁ ଇଚ୍ଛା କରୁଛନ୍ତି ?

ଏତିକି କହି ସେ ପୃଥ୍ୱୀ ଗାନ୍ଧୀଙ୍କୁ ଆଲିଙ୍ଗନ କରି ତାଙ୍କୁ ଶାଢ଼ୀଟିଏ ଆଣିଦେବା ପାଇଁ ଅନୁରୋଧ କଲେ । ତା'ପରେ ତାଙ୍କର ଅନୁରୋଧକୁ ଏଡ଼ିବା ପାଇଁ ଆମମାନଙ୍କର କାହାରି ଶକ୍ତି ନଥିଲା । ମିଷ୍ଟର ଘୋଷ ଓ ମୋତେ ସେ ସେଠି କିଛିକ୍ଷଣ ଭିତରେ ଭାଇ କରି ନେଇଥାଆନ୍ତି । ତାଙ୍କ ପାଇଁ ନୀଳରଙ୍ଗର ନାଇଲନ ଶାଢ଼ୀଟିଏ ଆସିଲା, ତାକୁ ମ୍ୟାଚ୍ କରି ବ୍ଲାଉଜଟିଏ । ଶ୍ରୀମତୀ ଗଲେ ତାଙ୍କୁ ଶାଢ଼ୀଟି ପିନ୍ଧିବାରେ ସାହାଯ୍ୟ କରିବାପାଇଁ । ସବୁ ପିନ୍ଧି ଯେତେବେଳେ ସେ ନୂଆ ପୋଷାକ ଯୋଗୁଁ ଉତ୍ଫୁଲ୍ଲ ହୋଇ ଡ୍ରେସିଂରୁମ୍‌ରୁ ବାହାରିଲେ, ସେତେବେଳେ ଆମେ ସମସ୍ତେ କ୍ଷଣକ-ପାଇଁ ଚକିତ ହୋଇ ରହିଗଲୁ । ତାଙ୍କର ଶ୍ୱେତରଙ୍ଗକୁ ଓ ସୁଗଠିତ ଶରୀର ଉପରେ ସେହି ନୀଳ ଶାଢ଼ୀଟି ଏତେ ସୁନ୍ଦର ଦିଶିବ ବୋଲି କେହି କଳ୍ପନା କରି ନଥିଲୁ । ସମବେତ କଣ୍ଠରେ ଆମେମାନେ ହର୍ଷନାଦ କଲୁ । ମୁଁ ଭାବିଲି, ଇଉରୋପରେ ଓ ଆମେରିକାରେ ସ୍ତ୍ରୀମାନେ ଶାଢ଼ୀ କାହିଁକି ପିନ୍ଧୁ ନାହାଁନ୍ତି ? ସେମାନଙ୍କ ଶରୀର ପାଇଁ ହିଁ ଶାଢ଼ୀ ସୃଷ୍ଟି ହୋଇଛି ।

କାନାଡ଼ାର ଯେତେ ଜାଗାକୁ ଆମେ ଯାଇଛୁ, ସବୁଠି କୌଣସି ଭାରତୀୟ ମହିଳା ଶାଢ଼ୀ ପିନ୍ଧିଥିଲେ କାନେଡ଼ିୟାନ୍ ମହିଳାମାନେ ଉଚ୍ଛ୍ୱସିତ କଣ୍ଠରେ ତାର

ପ୍ରଶଂସା କରିଛନ୍ତି—କହିଛନ୍ତି, ଇଉରୋପରେ ହିଁ ପ୍ରଚଳିତ କେତୋଟି ଡ୍ରେସ୍ ଶାଢ଼ୀ ସହିତ ତୁଳନୀୟ ହୋଇପାରେ, ନ ହେଲେ ଶାଢ଼ୀ ଅତୁଳନୀୟ । ଏ ସବୁ ସତ୍ତ୍ୱେ କ୍ୱଚିତ କେତେଜଣ ସ୍ୱୀକାର କରିଦେଲେ, ଶାଢ଼ୀକୁ ସାମୟିକ ରୂପେ ବି ପିନ୍ଧିବାକୁ ସେମାନେ ଇଚ୍ଛା ପ୍ରକାଶ କରନ୍ତି ନାହିଁ । ସବୁ ପ୍ରଶଂସା ପଛରେ ସେମାନଙ୍କ ସ୍କର୍ଟ ବା ସ୍ଲାକ୍ ସପକ୍ଷରେ ପରୋକ୍ଷ ପ୍ରବୃତ୍ତିନା ମଧ୍ୟ ଥାଏ—ତୁମର ଶାଢ଼ୀ କି ସୁନ୍ଦର ହୋଇଛି, ଲଭ୍ଲି ! ତୁମକୁ ଶୀତ କରିବ ନାହିଁ ଏହି ଶାଢ଼ିରେ ? ତୁମେ କିନ୍ତୁ ସ୍ଲାକ୍ ପିନ୍ଧିଲେ ବି ଖୁବ୍ ସୁନ୍ଦର ଦିଶିବ ? ତୁମେ ଶୀତଦିନଆ ଖେଳ ସ୍କିଂ କି ସ୍କେଟିଂ କରିବାକୁ ଯାଉଛ ? ଆଃ, ବରଫ ଦେଶକୁ ଆସିଲ, ବରଫକୁ ଭଲ ନ ପାଇଲେ ଚଳିବ କପରି ? କିନ୍ତୁ ଶାଢ଼ୀ ପିନ୍ଧି ତୁମେ ସେହି ସବୁ ଖେଳରେ କପରି ଯୋଗଦେଇ ପାରିବ ? ତୁମେ ସ୍କର୍ଟ ବା ସ୍ଲାକ୍ ପିନ୍ଧିବା ଉଚିତ । ଏହିପରି କେତେ କଣ ।

ଏହି ପରୋକ୍ଷ ପ୍ରବୃତ୍ତିନା, ବେଳେ ବେଳେ, ଅନ୍ୟ ପ୍ରକାର ଜଘନ୍ୟର ରୂପ ବି ଗ୍ରହଣ କରେ । ଯଦି ତୁମେ ଶାଢ଼ୀ ପିନ୍ଧି ଇଉନିଭରସିଟି ସମ୍ପୃକ୍ତ କାର୍ଯ୍ୟାଳୟଗୁଡ଼ିକ ଛଡ଼ା, ଅନ୍ୟ କୌଣସି ଅଫିସ୍‌କୁ କାମଟିଏ ପାଇଁ ଯାଅ, ତାହାହେଲେ କାମ ପାଇବା ପୂର୍ବରୁ ଶାଢ଼ୀକୁ ବର୍ଜନ କରି ସ୍କର୍ଟ ପିନ୍ଧିବାପାଇଁ କର୍ତ୍ତୃପକ୍ଷ ଉପଦେଶ ଦେବେ । ବାହାରକୁ ଉପଦେଶ, କିନ୍ତୁ ବାସ୍ତବରେ ତାହା ଆଦେଶ । ଇଟନ, ସିମ୍ପସନ, ପ୍ରଭୃତି ବହୁ ପ୍ରସିଦ୍ଧ ଡିପାର୍ଟମେଣ୍ଟାଲ୍ ଷ୍ଟୋରଗୁଡ଼ିକରେ ଏହି କଥା ଲିଖିତ ଆକାରରେ ନ ରହିଲେ ମଧ୍ୟ, ଏକପ୍ରକାର ଅଲଙ୍ଘନୀୟ କନ୍‌ଭେନ୍‌ସନ ହୋଇ ରହିଛି । (ଏସିଆର ଅନ୍ୟାନ୍ୟମାନେ ତ କାନାଡ଼ା ଆସିଲେ ସ୍କର୍ଟ, ବ୍ଲାଉଜ୍ ପିନ୍ଧୁଛନ୍ତି, ଏହି ଭାରତୀୟ ମହିଳାମାନେ କାହିଁକି ଶାଢ଼ୀ ଛାଡ଼ି ପାରିବେ ନାହିଁ ?) ଏହିକଥା ଆମେମାନେ ଶୁଣା ଶୁଣିରେ ଜାଣିଥିଲେ ମଧ୍ୟ ଆଶା ମିଶ୍ର ବୋଲି ଜଣେ ସିନ୍ଧୀ ବାନ୍ଧବୀ ଆମକୁ ସେକଥା କହି କଥାଟିର ସତ୍ୟତାର ପ୍ରମାଣ ଦେଇଥିଲେ । ଏହି ଆଶା ମିଶ୍ରଙ୍କ ସହିତ ଆମର ପରିଚୟ ବହୁତ ନାଟକୀୟ ଢଙ୍ଗରେ ହୋଇଥିଲା । ଥରେ ସନ୍ଧ୍ୟାରେ ହଠାତ୍ ଫୋନ୍ ବାଜିଲା । ଫୋନ୍ ଉଠାଇବାରେ ଜଣେ ଅପରିଚିତା ମହିଳା କହିଲେ—ଆପଣ ମଧ୍ୟ ଜଣେ ମିଶ୍ର । ମୁଁ ହଁ କଲାରୁ ସେ କହିଲେ ମୁଁ ମଧ୍ୟ ଜଣେ ମିଶ୍ର । ମୋର ସ୍ୱାମୀଙ୍କ ନାମ ବ୍ରହ୍ମ ମିଶ୍ର । ମୁଁ ପ୍ରକୃତରେ ସିନ୍ଧୱ୍ୟାନ—ସିନ୍ଧୀ ଲୋକ । ବିବାହ ପରେ ମିଶ୍ର ହୋଇ ଯାଇଛି । ମୁଁ ଓ ମୋ ସ୍ୱାମୀ ଟରଣ୍ଟୋରେ ବଡ଼ ବନ୍ଧୁହୀନ ଜୀବନଯାପନ କରୁଛୁ । ଆଗରୁ ଇଂଲଣ୍ଡରେ ଥିଲୁ, ଚାକିରି ପାଇଁ କାନାଡ଼ା ଚାଲି ଆସିଲୁ । ନୂଆ ଆସିଛୁ । କେହି ସାଙ୍ଗସାଥି ନାହାନ୍ତି । ଆପଣ ଯଦି ରାଜି ହୁଅନ୍ତି, ତାହାହେଲେ ଏହି ସନ୍ଧ୍ୟାରେ ଆମେ ଦୁହେଁ ଆପଣଙ୍କ ପାଖକୁ ବୁଲି ଆସନ୍ତୁ । ଆପଣଙ୍କ ନାମ ଫୋନ୍ ଖାତାରୁ ସନ୍ଧାନ କଲୁ । ମିଶ୍ର ଦେଖି ଭାବିଲୁ ନିଶ୍ଚୟ ଆମର ପରି ଆପଣ

ଭାରତୀୟ ହୋଇଥିବେ । ମୁଁ ଆପଣଙ୍କ ଶ୍ରୀମତୀଙ୍କ ସହ କିଛି ସମୟ ତଳେ ଫୋନ୍‌ରେ କଥାବାର୍ତ୍ତା ହୋଇଛି ।

ମୁଁ ସେମାନଙ୍କୁ ନିମନ୍ତ୍ରଣ କରି ଫୋନ୍ ରଖିଲି । ଶ୍ରୀମତୀ କହିଲେ, ହଁ ସେହି ମହିଳା କିଛି ସମୟ ତଳେ ଫୋନ୍ କରିଥିଲେ । ତା'ପରେ ଆମେ ସେମାନଙ୍କ ଅଭ୍ୟର୍ଥନା ପାଇଁ ଲାଗିଗଲୁ । ଶ୍ରୀମତୀ ଗୋଲପଜାମୁ ତିଆରି କରିବାରେ ଲାଗିଲେ, ମୁଁ ଦର୍ଶନ ବହିଗୁଡ଼ାକ ଆଡ଼େଇ ଦେଇ ସେମାନଙ୍କୁ ହିନ୍ଦି ଓ ଓଡ଼ିଆ ଗୀତ ଶୁଣାଇବା ପାଇଁ ଟେପ୍ ରେକର୍ଡ଼ରଟା ଆଣି ଟେବୁଲ ଉପରେ ରଖିଲି । ଆମର କେହି ବନ୍ଧୁ ଆସିଲେ—ଜଗନ୍ନାଥଙ୍କୁ ଦେଖିବା ଛଡ଼ା, ଓଡ଼ିଆ ଗୀତ, ବିଶେଷକରି ବାଲକୃଷ୍ଣ ଦାସଙ୍କର କଣ୍ଠସ୍ୱର ତାଙ୍କୁ ଶୁଣିବାକୁ ହେଉଥିଲା ।

କିଛି ସମୟ ପରେ ଦୁଆରେ କରାଘାତ ହେବାରୁ ମୁଁ ଦୁଆର ଖୋଲିଲି, ଜଣେ ସୁନ୍ଦରୀ ଭଦ୍ର ମହିଳା ସ୍କର୍ଟ ଓ ବ୍ଲାଉଜ୍ ପିନ୍ଧି ଠିଆ ହୋଇ ମୋତେ ସ୍ମିତ ମୁରୁକେଇ ମୁରୁକେଇ ହସୁଥାନ୍ତି । ମୁଁ ପ୍ରଥମରୁ ତାଙ୍କୁ ଅନ୍ୟାନ୍ୟ ଭାରତୀୟ ମହିଳାଙ୍କ ପରି ଶାଢ଼ୀରେ ହିଁ ଦେଖିବି ବୋଲି ଭାବି ନେଇ ଥିବାରୁ, ସ୍କର୍ଟ ବ୍ଲାଉଜ୍ ଦେଖି ଟିକିଏ ଆଶ୍ଚର୍ଯ୍ୟ ହୋଇଗଲି । ପୁଣି ମୁଁ ତାଙ୍କୁ ତାଙ୍କ ସ୍ୱାମୀଙ୍କ ସହିତ ଦେଖିବାକୁ ଆଶା କରିଥିଲି, ଏକୁଟିଆ ନୁହେଁ । ସେ ନିଜର ପରିଚୟ ଦେଇ, ଶୁଭ ସନ୍ଧ୍ୟା ଜଣାଇ ଘର ଭିତରକୁ ଆସିଲେ । ସ୍କର୍ଟ ପିନ୍ଧିଥିବା ହେତୁ ସେ ଟିକିଏ ଲାଜ ଲାଜ କରୁଥାନ୍ତି । ବସିବା ପରେ ସ୍କର୍ଟକୁ ଆଣ୍ଠୁ ଠୁ ଆହୁରି ତଳକୁ ଆଣିବାକୁ ଚେଷ୍ଟା କରି ସେ ସେଇଟିକୁ ମଝିରେ ମଝିରେ ଝିଙ୍କୁ'ଥାନ୍ତି । ଶେଷରେ ସେ ଏତେ ଆତ୍ମସଚେତନ ହୋଇ ପଡ଼ିଲେ ଯେ ସ୍କର୍ଟ ପିନ୍ଧିବାକୁ ସମର୍ଥନ କରିବାକୁ ଯାଇ କହିଲେ—ମୁଁ ଅଫିସରୁ ସିଧା ଆସିଲି । ବ୍ରହ୍ମ ମୋରି ଅଫିସରେ କାମ କରେ; କିନ୍ତୁ ସେ ଭାରି କ୍ଲାନ୍ତ ହୋଇ ପଡ଼ିଥିବାରୁ ସିଧା ଘରକୁ ଚାଲିଗଲେ, ଆଉ ଦିନେ ଆସିବେ । ମୋତେ ସ୍କର୍ଟ ବ୍ଲାଉଜ୍ ପିନ୍ଧିବାକୁ ବି ଭଲ ଲାଗେନି; କିନ୍ତୁ କଣ କରାଯାଏ ! ଏଠି ତୁମେ ଶାଢ଼ୀ ପିନ୍ଧି ଅଫିସ ଯାଇ ପାରିବ ନାହିଁ । ସେମାନେ ବହୁତକଥାର ଆଳ ଦେଖାଇ ତୁମକୁ ଶାଢ଼ୀ ନ ପିନ୍ଧିବାକୁ କହିବେ ।

ଆଶାଙ୍କ ସହ କଥା ହେଉ ହେଉ ଆମେ ଜାଣିଲୁ ଯେ ସେ ତାଙ୍କର ଇଞ୍ଜିନିୟର ପିତାଙ୍କ ସହ ଓଡ଼ିଶାରେ ତାଙ୍କର ପିଲାଦିନଟା କଟାଇଛନ୍ତି । କଟକରେ ମାଉଣ୍ଟ୍‌ କାର୍ମେଲ ସ୍କୁଲରେ ସେ ପଢ଼ୁଥିଲେ । ଆମେ ଏକଥା ଶୁଣିବା ମାତ୍ରକେ ଖୁବ୍ ଖୁସି ହୋଇ ପଚାରିଲୁ—ତାହେଲେ ଆପଣ ଓଡ଼ିଆ ତ ବୁଝି ପାରୁଥିବେ ନିଶ୍ଚୟ ? କହି ବି ପାରୁଥିବେ ?

ସେ ହସି ହସି କହିଲେ—ହଁ, କିଛି କିଛି । ହେଇ ଦେଖନ୍ତୁ, କହୁଛି—ଆରେ ଡମରୁ ! ଗୋଟିଏ ପାଣିଗ୍ଲାସେ ଆଣିଲୁ ।

ସେ ଠିକ୍ ଉଚ୍ଚାରଣ କରି ବାକ୍ୟଟିକୁ କହିଥିଲେ । ସେ ଓଡ଼ିଆ କହି ପାରୁଥିବାରୁ ଆମେ ଖୁସି ହୋଇଗଲୁ । ମୁଁ ପଚାରିଲି ଆପଣ ଓଡ଼ିଶାରେ ସାତ ଆଠ ବର୍ଷ ରହିଛନ୍ତି ବୋଲି କହିଲେ, କିଛି ଓଡ଼ିଆ ବହି ପଢ଼ିଛନ୍ତି ? ଉପନ୍ୟାସ, କବିତା, କି ପ୍ରବନ୍ଧ ? ସେ ମନା କଲେ । କହିଲେ ଯେ ସେ ଗୋଟିଏ ହେଲେ ବି ଓଡ଼ିଆ ବହି ପଢ଼ି ନାହାନ୍ତି । ତାଙ୍କର ଓଡ଼ିଆ, ତାଙ୍କ ଘରର ଟୋକା ଡମରୁ ସହିତ କଥାବାର୍ତ୍ତା ହୋଇ, ମାରୱାଡ଼ି ସ୍କୁଲରେ ଯେଉଁ ଓଡ଼ିଆ ପିଲା ପଢ଼ନ୍ତି ବା ରାସ୍ତାରେ ଯାଉ ଯାଉ ଏଠୁ ସେଠୁ ଶୁଣା ଶୁଣିରୁ ତାଙ୍କର ଓଡ଼ିଆ ଜ୍ଞାନର ସୃଷ୍ଟି । ଓଡ଼ିଆ କିଛି କିଛି ସେ ଲେଖି ଶିଖିଥିଲେ, କିନ୍ତୁ ତାହା ସେ ପାସୋରି ଦେଇଛନ୍ତି ଇଂଲଣ୍ଡରେ ରହିଥିବା ଭିତରେ । ସ୍ୱାଭାବିକ କଥା । ଶୁଣାଶୁଣି ଓଡ଼ିଆ ଜ୍ଞାନ କେତେଦିନ ରହନ୍ତା ? ଓଡ଼ିଶାରେ ଥିବା କେତେଜଣ ଅନ୍ୟ ଭାଷାଭାଷୀ ଲୋକ କହିବେ ଯେ ସେମାନେ ଓଡ଼ିଆ ବହି କିଣନ୍ତି ଓ ପଢ଼ନ୍ତି ବୋଲି ? ସବୁଠୁ ବେଶି ଟଙ୍କା ଆତଯାତ ହେଉଥିବା କଟକର ନୟାସଡ଼କରେ, ଜଣେ ବୁଲିଗଲେ ଦେଖିବ ଯେ, ସବୁ ଦୋକାନୀମାନେ ଖଣ୍ଡେ ଲେଖା ଓଡ଼ିଆ ଖବର କାଗଜ ବି ରଖନ୍ତି ନାହିଁ । ଦୈନିକ 'ବିଶ୍ୱାମିତ୍ର'ରେ ସେମାନଙ୍କ କାମ ଚଳିଯାଏ । ସେହି କଥା ବ୍ରହ୍ମପୁର ଓ ପାରଳା ଖେମୁଣ୍ଡିରେ । ସେଦିନ ମୁଁ ଆଶା ମିଶ୍ରଙ୍କୁ ମୃଦୁ ଭର୍ତ୍ସନା କରି କହିଥିଲି—ଆପଣ ଜୀବନରେ ଗୋଟିଏ ସୁବର୍ଣ୍ଣ ସୁଯୋଗ ହରାଇଲେ । ଗୋଟାଏ ଦେଶରେ ରହିଲେ ଏତେ ଦିନ, ଅଥଚ ସେଠି ଯେଉଁ ସବୁ ଅମୂଲ୍ୟ ରତ୍ନ ଲେଖାରେ ରହିଛି, ଯାହା ଚେଷ୍ଟାକଲେ ବି ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ମିଳିବ ନାହିଁ, ସେ କଥା ପ୍ରତି ଥରେ ହେଲେ ଧ୍ୟାନ ଦେଲେ ନାହିଁ । ଗୋପୀନାଥ, କାହ୍ନୁଚରଣ କି କାଳିନ୍ଦୀଙ୍କର କୌଣସି ଲେଖା ନପଢ଼ି ଆପଣ କେବଳ ହିନ୍ଦୀ ଇଂରେଜୀ ଜୋରରେ କଟକରେ ଯାହା ଛଅ ସାତବର୍ଷ କଟାଇ ଦେଲେ । ମୁଁ ବନାରସରେ ଥିବାବେଳେ ତ ହିନ୍ଦୀ ଶିଖିଥିଲି, ଖୁବ୍ ହିନ୍ଦୀବହି ପଢ଼ିଥିଲି । ହିନ୍ଦୀଭାଷୀ ଲୋକେ ଓଡ଼ିଶାରେ ଥିବାବେଳେ ଓଡ଼ିଆ ସାହିତ୍ୟରେ ଥିବା ଅମୂଲ୍ୟ ବହିଗୁଡ଼ିକୁ କାହିଁକି ପଢ଼ିବେ ନାହିଁ ?

ପରେ ବ୍ରହ୍ମ ମିଶ୍ରଙ୍କ ସହିତ ଆଶା ଦେବୀ ଆମ ଘରକୁ ଆଉ ଥରେ ଆସିଥିଲେ ଓ ଭାରତକୁ ଫେରିବା ପୂର୍ବରୁ ଆମେମାନେ ତାଙ୍କ ଘରକୁ ଥରେ ଯାଇଥିଲୁ । ସେ ଦୁଇଥରଯାକ ଶାଢ଼ୀ ପିନ୍ଧିଥିଲେ ଓ ଦୁଇଥରଯାକ ଆମମାନଙ୍କୁ କାନାଡ଼ାରେ ରହିବାକୁ ଅନୁରୋଧ କରିଥିଲେ ।

ଓ୍ୱାଶିଂଟନରେ ଭେଟିଥିବା ଜର୍ମନ ତରୁଣୀ ଗ୍ରେଜମେଗ୍ସଙ୍କୁ ମୁଁ ଜଣେ ଅସାଧାରଣ ତରୁଣୀ ବୋଲି କହିବି । ସେଦିନ ସେ ଶାଢ଼ୀ ପିନ୍ଧି ଆମମାନଙ୍କ ସହିତ ଡ୍ରଇଁ ରୁମ୍‌ରେ ବସି କଥାବାର୍ତ୍ତା ହେଉଥିବାବେଳେ ହଠାତ୍ ତାଙ୍କର ଶାଢ଼ୀକୁ ତାଙ୍କର ଜଂଘଯାଏଁ ସେ ଟେକି ଆଣିଲେ । ଆମେମାନେ ଅପ୍ରସ୍ତୁତ ହୋଇ ସେ ଦୃଶ୍ୟ ଦେଖିଥିଲେ ମଧ୍ୟ କିଛି ନ ଜାଣିବା ପରି କଥାବାର୍ତ୍ତାରେ ମଗ୍ନ ରହିଲୁ । ମିଷ୍ଟର ଘୋଷଙ୍କର ଆଉ ଜଣେ ବଙ୍ଗାଳୀ ବନ୍ଧୁ ସେଠି ବସିଥାନ୍ତି । ତାଙ୍କର ନାମ ନିଖିଲ ବାନାର୍ଜି । ସେ ସଙ୍ଗେ ସଙ୍ଗେ ଗ୍ରେଜମେଗ୍ସଙ୍କୁ ଶାଢ଼ୀକୁ ତଳକୁ ଖସାଇ ଦେବାକୁ ଆଦେଶ ଦେଲେ । ଗ୍ରେଜମେଗ୍ସ କିନ୍ତୁ ସରଳ ଓ ନିଷ୍କପଟ ଶବ୍ଦରେ ପଚାରିଲେ—କାହିଁକି ? ମୋତେ ତ ମୋ ଶାଢ଼ୀଟାକୁ ଏପରି ଟେକି ଆଣିଲେ ଭଲ ଲାଗୁଛି । ସୁବିଧା ଲାଗୁଛି !

ନିଖିଲ କହିଲେ, ମୋର ଗାର୍ଲ ଫ୍ରେଣ୍ଡ୍ ଫ୍ରେଣ୍ଡି ହେଲେ ଶାଢ଼ୀ ପିନ୍ଧି ଠିକ୍ ଏହିପରି କରିଥିଲେ । ଆପମାନେ ସବୁବେଳେ ସ୍କର୍ଟ ପିନ୍ଧି ଅଭିଛନ୍ତି ଯାହା ଅଣ୍ଟୁ ଯାଏଁ ପଡ଼େ, 'ମିନି' ହେଲେ ଜଂଘଯାଏଁ । ସେଇଥିପାଇଁ ଶାଢ଼ୀକୁ ଆପଙ୍କୁ ଏତେ ଉପରକୁ ଟେକି ଆଣିବାକୁ ଭଲ ଲାଗୁଛି; କିନ୍ତୁ ଶାଢ଼ୀ ସ୍କର୍ଟ ନୁହେଁ, ଶାଢ଼ୀ ସହିତ ଗୁଡ଼ିଏ ନିୟମ ଅଛି, ଯାହା ସ୍କର୍ଟ ସହିତ ଯାଏ ନାହିଁ । ଉଦାହରଣ ସ୍ୱରୂପ, ଶାଢ଼ୀ ପିନ୍ଧିବାର ଗୋଟିଏ ନିୟମ ଯେ ତାହା ବଳାଗଣ୍ଠି ଯାଏଁ ଝୁଲିକରି ରହିବ, ଜଙ୍ଘ ଯାଏ ନୁହେଁ । ସେହିପରି ଅଉ ଗୋଟିଏ ନିୟମ ଯେ ଅନ୍ତର୍ବାସ ଶାୟା ଶାଢ଼ୀଠୁ ବେଶି ଓସାରର ହେବା ଉଚିତ ନୁହେଁ, ଶାଢ଼ୀଠୁ ବଳି ତାହା ପଦାକୁ ଦିଶିବା ଉଚିତ ନୁହେଁ, ଏହିପରି । ଅବଶ୍ୟ ଶ୍ରମିକ ପରିବାରରେ ସେମାନେ କମ୍ ଓସାରର ଶାଢ଼ୀ ପିନ୍ଧନ୍ତି; କିନ୍ତୁ ସେମାନଙ୍କର ଶାଢ଼ୀ ପିନ୍ଧା, କି ସେହି ଓସାରର ଶାଢ଼ୀ ପିନ୍ଧାକୁ ଷ୍ଟାଣ୍ଡାର୍ଡ ଶାଢ଼ୀ ପିନ୍ଧା ବୋଲି ଧରି ନିଆଯାଏ ନାହିଁ । ଟିକିଏ ଆର୍ଥିକ ସ୍ୱଚ୍ଛଳତା ଆସିଲେ, ସେମାନେ ମୁଁ ବର୍ଣ୍ଣନା କରିଥିବା ଢଙ୍ଗରେ ଶାଢ଼ୀ ପିନ୍ଧନ୍ତି ।

ମୁଁ ଜାଣିଲି, ପଦାର୍ଥ ବିଜ୍ଞାନରେ ରିସର୍ଚ୍ଚ କରୁଥିବା ନିଖିଲ ବାନାର୍ଜି, ଆଧୁନିକ ଦର୍ଶନର ଭାଷା ବିଶ୍ଳେଷଣ ପଦ୍ଧତି ସହିତ ପରିଚିତ । ନିଖିଲଙ୍କ କଥା ଶୁଣି ଗ୍ରେଜମେଗ୍ସଙ୍କ ମୁହଁରେ ଅରୁଣିମା ଖେଳିଗଲା । ସେ 'ମୁଁ ଦୁଃଖିତ' କହି ସଙ୍ଗେ ସଙ୍ଗେ ଶାଢ଼ୀକୁ ପୁଣି ତଳକୁ ଖସାଇ ଦେଲେ । କିନ୍ତୁ ପ୍ରଥମେ ପ୍ରଥମେ ଶାଢ଼ୀ ପିନ୍ଧିବା ଦ୍ୱାରା ସେ ଅଶାନ୍ତି ଅନୁଭବ କରୁଥିଲେ ମଧ୍ୟ ଶାଢ଼ୀ ଛାଡ଼ି ସ୍କର୍ଟ ପିନ୍ଧିବା କଥା ସେ ଭୁଲ୍‌ରେ ବି ଧରୁ ନ ଥିଲେ; କିନ୍ତୁ ଆମେରିକାରେ ଗ୍ରେଜମେଗ୍ସଙ୍କ ପରି ତରୁଣୀ ନିୟମ ନୁହେଁ, ବ୍ୟତିକ୍ରମ ଥିଲେ । ଅନ୍ୟାନ୍ୟମାନେ ଶାଢ଼ୀକୁ ପ୍ରଶଂସା କଲେ ବି ହୃଦୟରେ, ଭାରତୀୟ ସ୍ତ୍ରୀମାନେ ଶାଢ଼ୀକୁ କାହିଁକି ଛାଡ଼ୁ ନାହାନ୍ତି ଭାବି, ବିସ୍ମିତ ହୁଅନ୍ତି । ସେମାନଙ୍କ ଶାଢ଼ୀ-ବିଦ୍ୱେଷର ଚରମ ପ୍ରକାଶ ହୋଇଥିଲା ଥରେ ଆମେ ଚିକାଗୋରୁ ଟରଣ୍ଟୋ ଟ୍ରେନ୍‌ରେ

ଫେରୁଥିବାବେଳେ । ଜଣେ ଖୁବ୍ ସୁସଜ୍ଜିତା ସ୍ଲାକ୍ ପରିହିତା ମହିଳା ଆମ ସିଟ୍ ପାଖକୁ ଆସି ଠିଆହେଲେ । ଶ୍ରୀମତୀଙ୍କ କାଶ୍ମୀରୀ ସିଲ୍କ ଶାଢ଼ୀର ପ୍ରଶଂସାରୁ କଥାବାର୍ତ୍ତା ଆରମ୍ଭ ହେଲା । ଶ୍ରୀମତୀ ମଧ୍ୟ ତାଙ୍କର ସବୁଜ ରଙ୍ଗର ସ୍ଲାକ୍ ଓ ଡ୍ରେସ୍‌କୁ ପ୍ରଶଂସା କଲେ । ତା'ପରେ ସେ ଭାରତରୁ କପରି ବାପଗୁଡ଼ିକ ପାଇବେ, ସିଧା ମଗାଇଲେ କେତେ ଟ୍ୟାକ୍ସ ପଡ଼ିବ ଇତ୍ୟାଦି ପ୍ରଶ୍ନ ସବୁ ପଚାରିଲେ । ଏହିପରି ପ୍ରଶ୍ନୋତ୍ତର ଚାଲିଥିବାବେଳେ ହଠାତ୍ ମହିଳା ଜଣକ ଶ୍ରୀମତୀଙ୍କୁ ପଚାରିଲେ—ତୁମେ ଏଠାକୁ ଆସିବା ପରେ ସ୍ଲାକ୍ କେବେ ପିନ୍ଧିଛ ?

ଶ୍ରୀମତୀ ମନାକଲେ । ସେ, ଉତ୍ତର ଶୁଣି, ତାଙ୍କ ମୁହଁରେ ପରମ ଆଶ୍ଚର୍ଯ୍ୟ ଓ ଭର୍ତ୍ସନାର ଏକଭଙ୍ଗୀ ଆଣି ପଚାରିଲେ—କାହିଁକି ? ସବୁବେଳେ ଏପରି ସର୍ପି କୁଣ୍ଡେଇ ପରି ଶାଢ଼ୀଟିଏ ପିନ୍ଧିବାକୁ ତୁମକୁ ଭଲ ଲାଗୁଛି ?

ସର୍ପି କୁଣ୍ଡେଇ ଶବ୍ଦଟି ଶ୍ରୀମତୀଙ୍କୁ ବାଧିଲା । ସେ ଉତ୍ତର ଦେଲେ—ଆମେ ତ ସବୁବେଳେ ଏହିପରି ପିନ୍ଧୁ, ଏହାକୁ ସର୍ପି କୁଣ୍ଡେଇ ବେଶ ବୋଲି କାହିଁକି କହୁଛ ?

ସେ କହିଲେ—ନା, ନା । ଏଇଟା କେବଳ ବେଳେ ବେଳେ ପିନ୍ଧିବା ପାଇଁ ଠିକ୍ ହୋଇପାରେ, କିନ୍ତୁ କାମ ଧାମ କରିବା ପାଇଁ ସ୍ଲାକ୍ ଓ ଆମର ଡ୍ରେସ୍ ପିନ୍ଧିବା ଉଚିତ । ଶାଢ଼ୀ ପିନ୍ଧି ଜଣେ ସ୍ତ୍ରୀଲୋକ ହାତପାଦ କପରି ସଞ୍ଚାଳନ କରି ପାରିବ ?

ମୁଁ ସେମାନଙ୍କ କଥାରେ ଯୋଗ ଦେଇ କହିଲି—ଏହି ଶାଢ଼ୀ ବହୁ ପ୍ରକାରରେ ପିନ୍ଧା ଯାଇପାରେ । କଚ୍ଛମାରି ଏହାକୁ ପିନ୍ଧି ଯୁଦ୍ଧକ୍ଷେତ୍ରକୁ ବି ଜଣେ ଯାଇ ପାରିବ । ଯେପରିକି ଝାନ୍ସୀରାଣୀ ଲକ୍ଷ୍ମୀବାଈ କରିଥିଲେ । ୧୮୫୭ରେ ଭାରତର ପ୍ରଥମ ସ୍ୱାଧୀନତା ଆନ୍ଦୋଳନରେ ଲକ୍ଷ୍ମୀବାଈ ଏହି ଶାଢ଼ୀ ପିନ୍ଧି ଇଂରେଜମାନଙ୍କୁ ଏପରି ମାରିଥିଲେ ଯେ ତାଙ୍କର ଅନ୍ୟାନ୍ୟ ବନ୍ଧୁମାନେ ଆଉ ଟିକିଏ ବିଶ୍ୱସ୍ତ ଓ ଦେଶହିତୈଷୀ ହୋଇଥିଲେ ହୁଏତ ଭାରତ ବହୁ ଆଗରୁ ସ୍ୱାଧୀନ ହୋଇଯାଇଥାନ୍ତା । ସେତେବେଳେ ହାତପାଦ ସଞ୍ଚାଳନପାଇଁ ସେ ସ୍ଲାକ୍‌ର ପ୍ରୟୋଜନୀୟତା ଦେଖି ନ ଥିଲେ । ତା'ପରେ 'ସର୍ପି କୁଣ୍ଡେଇ' ଗୋଟିଏ ଆପେକ୍ଷିକ ପ୍ରତ୍ୟୟ । ଆମ ଶାଢ଼ୀ ପିନ୍ଧାଟା ତୁମକୁ ସର୍ପି କୁଣ୍ଡେଇ ପରି ଦିଶୁଛି କାରଣ ତୁମ ପାଇଁ ଶାଢ଼ୀ ନୂଆ; କିନ୍ତୁ ଆମେ ଏଠୁ ସର୍ପି କୁଣ୍ଡେଇ କହିବା ବେଳେ ସ୍ଲାକ୍ କି ସ୍କର୍ଟ ପିନ୍ଧା ସର୍ପି କୁଣ୍ଡେଇ କହିବୁ, କାରଣ ସ୍ଲାକ୍ କି ସ୍କର୍ଟ ପିନ୍ଧା ଆମକୁ ଭାରି ଅଡ଼ୁଆ ଅଡ଼ୁଆ ଲାଗୁଛି । ଆମ ପାଇଁ ସ୍ଲାକ୍, ସ୍କର୍ଟ ହେଉଛି ସର୍ପି କୁଣ୍ଡେଇ ଡ୍ରେସ୍ ।

ତା'ପରେ ଭଦ୍ରମହିଳା, 'କ୍ଷମା କରିବେ, ନିଦ ଲାଗିଲାଣି' କହି ଉଠି ଚାଲିଗଲେ । ତାଙ୍କୁ ଏତେ ନିଦ ଲାଗିଲା ଯେ ମୋଠୁ ବାପଗୁଡ଼ିକ ପାଇବାର ଠିକଣା

ନେବାକୁ ବି ସେ ଭୁଲିଗଲେ । ଟ୍ରେନ୍‌ରେ ଶୋଇବା ବ୍ୟବସ୍ଥା କରୁଥିବାବେଳେ ମୋର ମନକୁ ଆସିଲା, ଭବିଷ୍ୟତରେ ଭାରତରେ ଶାଢ଼ୀ ବିରୁଦ୍ଧରେ ଦଳେ ଲୋକ ନିଶ୍ଚୟ ଆନ୍ଦୋଳନ କରିବେ । ସେମାନଙ୍କର ଯୁକ୍ତି ଏହି ମହିଳାଙ୍କର ଯୁକ୍ତି ପରି ହେବ ବା ଆଉ କିଛି ଅର୍ଥନୈତିକ ଯୁକ୍ତି ସେମାନେ ଦେବେ । ବୋଧେ ସେମାନେ କହିବେ ଯେ ଆମର ସ୍ତ୍ରୀମାନେ ଶାଢ଼ୀ ପିନ୍ଧିବା ଦ୍ୱାରା ଗୁଡ଼ାଏ କନା ନଷ୍ଟ ହେଉଛି । ସେତକ କପଡ଼ା ଭାରତ ବାହାରକୁ ରପ୍ତାନି କରି, ଆମେମାନେ ଲାଭବାନ ହୁଅନ୍ତେ, ଯଦି ଭାରତୀୟ ସ୍ତ୍ରୀମାନେ ସେମାନଙ୍କର ଶାଢ଼ୀ ପିନ୍ଧା କୁସଂସ୍କାରକୁ ଛାଡ଼ି ସ୍କର୍ଟ କି ସ୍ଲାକ୍ସ ପିନ୍ଧନ୍ତେ !



# ଦାର୍ଶନିକ ଓ ସାହିତ୍ୟିକ ସାର୍ତ୍ର

ହାତ ବନ୍ଧାଥିଲେ ଲକ୍ଷେ, ମଲେ ବି ଲକ୍ଷେ ଟଙ୍କା ପରି ଜର୍ମାନୀ ଦାର୍ଶନିକ ହେଗେଲ, ବଞ୍ଚିଥିବା ଅବସ୍ଥାରେ ଜର୍ମାନୀରେ ଖ୍ୟାତି ଅର୍ଜନ କରିଥିଲେ, ମଲା ପରେ ତାଙ୍କ ଦର୍ଶନର ପ୍ରଭାବ ସାତସମୁଦ୍ର ତେର ନଈ ଡେଇଁଗଲା । କେବଳ ନୁହଁ, ତାଙ୍କୁ ସମାଲୋଚନା କରି, ତାଙ୍କର ମତବାଦକୁ ଭୁଲ୍ ବୋଲି କହି, ଯେଉଁ ପ୍ରତିକ୍ରିୟା ହେଲା, ସେହି ହେଗେଲ—ବିରୁଦ୍ଧ—ମତବାଦକୁ ଗୃହେଟି ତିନୋଟି ଦାର୍ଶନିକ ଧାରାରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଲେ—ମାର୍କସବାଦ, ଦୃଶ୍ୟବିଜ୍ଞାନ ବା ଫେନୋ-ମେନୋଲୋଜି, ବିଶ୍ଳେଷଣ ପ୍ରଧାନ-ପ୍ରତ୍ୟକ୍ଷ-ଜ୍ଞାନବାଦ ବା ଲଜିକାଲ୍ ପଜିଟିଭିଜମ୍ ଓ ସ୍ଥିତିବାଦ ବା ଏକ୍‌ଜିଷ୍ଟେନ୍‌ସିଆଲିଜମ୍ । ଏହି ଗୃହେଟି ଦାର୍ଶନିକ ଧାରା, ପରୋକ୍ଷ ଭାବେ, ହେଗେଲଙ୍କ ଦର୍ଶନର ମହତ୍ତ୍ୱକୁ ପ୍ରତିପାଦନ କରନ୍ତି ।

୧୯୬୪ ମସିହାରେ—ସାର୍ତ୍ର ନୋବେଲ ପ୍ରାଇଜ୍ ପାଇ ତାକୁ ପ୍ରତ୍ୟାଖ୍ୟାନ କରି ସାରା ବିଶ୍ୱରେ ଚହଲ ପକାଇ ଦେଇଥିଲେ । କ୍ୟାମ୍ପସ୍‌ରେ ଯାହାକୁ ଦେଖିବ ସେ ସାର୍ତ୍ରଙ୍କ ଉଦାରତା, ସାଧୁତା ନେଇ କଥାବାର୍ତ୍ତା ହେଉଥିଲେ । କେତେକ ପୁଣି ତାଙ୍କର ଏହି ପ୍ରତ୍ୟାଖ୍ୟାନରେ ଲୁକ୍କାୟିତ ଅହଂକାରକୁ ଦେଖିବାକୁ ପାଇଥିଲେ । ଆଉ କେତେ ଜଣ, କାମ୍ୟୁ ଆଗ ପାଇଥିବାରୁ, ସାର୍ତ୍ର ନୋବେଲ ପ୍ରାଇଜ୍ ପ୍ରତି ବିତଷ୍ଣ ହୋଇ ଯାଇଛନ୍ତି ବୋଲି କଳ୍ପନା କରୁଥିଲେ । ସାର୍ତ୍ରଙ୍କର କିନ୍ତୁ ଯୁକ୍ତି ଥିଲା—ତାଙ୍କର ପାଠକମାନେ ତାଙ୍କ ଦର୍ଶନକୁ ଦାର୍ଶନିକ ମୂଲ୍ୟଦୃଷ୍ଟିରୁ ପଢ଼ିବା ଉଚିତ—ତାଙ୍କର ନାଟକ, ଗଳ୍ପ, ଉପନ୍ୟାସକୁ, ସେଗୁଡ଼ିକର ସାହିତ୍ୟିକ ଗୁଣ ଯୋଗୁଁ ଆଦର କରିବା ଉଚିତ—ଜଣେ ନୋବେଲ୍ ପ୍ରାଇଜ୍ ପାଇଥିବା ଲୋକର ଲେଖା ବୋଲି ନୁହଁ । କିନ୍ତୁ ଥରେ ସେ ପ୍ରାଇଜ୍ ଗ୍ରହଣ କଲେ ବହୁଲୋକ ତାଙ୍କୁ ସେହି ଦୃଷ୍ଟିରୁ ପଢ଼ିବେ ନାହିଁ, ଫଳରେ ତାହା ତାଙ୍କ ପାଇଁ ସଂସାରରେ ଅସାଧୁତା ବା ବ୍ୟାଡ୍ ଫେଥ୍ ସୃଷ୍ଟି କରିବା ପରି ହେବ । ଲୋକଙ୍କ ମଧ୍ୟରେ ଓ ନିଜ ପାଇଁ ଏହି ଅସାଧୁତା ସୃଷ୍ଟି ନ କରିବାପାଇଁ ସାତଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ହେଲେ ବି ନୋବେଲ୍ ପ୍ରାଇଜ୍‌କୁ ସେ ତ୍ୟାଗ କରିଥିଲେ । ଏହି ଦାର୍ଶନିକଙ୍କ ଜୀବନୀ ଓ ଦର୍ଶନ ଆଲୋଚନା କଲେ, କେବଳ ଫ୍ରାନ୍‌ସ୍ ନୁହେଁ,

ସାମ୍ପ୍ରତିକ ବିଶ୍ୱର ବହୁ ଆତ୍ମିକ ଓ ବୌଦ୍ଧିକ ସମସ୍ୟା ଉପରେ ଆଲୋକପାତ ହୋଇଥାଏ ।

ଜାଁ ପଲ୍ ସାର୍ତ୍ରିଙ୍କ ଜନ୍ମ ଫ୍ରାନ୍ସର ପ୍ୟାରି ନଗରୀରେ ଜୁନ୍ ୨୧, ୧୯୦୫ରେ । ଜାତିରେ ଫରାସୀ, କିନ୍ତୁ ତାଙ୍କ ଶିକ୍ଷା, ଲେଖା, ଦର୍ଶନରେ ଜର୍ମାନ ଓ ଇଂରେଜୀ ବୁଦ୍ଧିଜୀବୀମାନଙ୍କର ବେଶ୍ ପ୍ରଭାବ ପଡ଼ିଛି । ଇଉରୋପର ବାତାବରଣରେ, ସକଳ କଳି କଳହ ସତ୍ତ୍ୱେ, ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଏକ ଭ୍ରାତୃତ୍ୱ ସମ୍ବନ୍ଧ ସବୁକାଳେ ରହି ଆସିଛି । ସାର୍ତ୍ରିଙ୍କ ଦୁଇବର୍ଷ ବେଳେ, ତାଙ୍କ ପିତାଙ୍କର ମୃତ୍ୟୁ ହୁଏ, ସେ ଲାଳିତପାଳିତ ହୁଅନ୍ତି ଫରାସୀ ଭାଷା ଶିକ୍ଷକ ତାଙ୍କ ଅଜାଙ୍କ ଦ୍ୱାରା । ତାଙ୍କ ଅଜା ଚାର୍ଲସ୍, ବିଶ୍ୱବିଶ୍ରୁତ ଆଲବର୍ଟ ସ୍ୱାଇତ୍ଜରଙ୍କ ଜ୍ଞାତି ଲୋକ । ଅଜାଙ୍କ ଘରେ ତାଙ୍କର ବାଲ୍ୟଜୀବନ କଥା, ସାର୍ତ୍ରି, 'ଶବ୍ଦାବଳୀ' ବୋଲି ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି । ବଡ଼ ହେବା ପାଇଁ, ଜଣେ ସାହିତ୍ୟିକ ଓ ଦାର୍ଶନିକ ହେବାପାଇଁ, ଅଜାଙ୍କଠୁ ସେ ପ୍ରେରଣା ପାଇଥିଲେ । ଦର୍ଶନ ଶିକ୍ଷା ପରେ ସେ ଦର୍ଶନ ଅଧ୍ୟାପକ ଭାବେ ୧୯୩୦ ଠୁ କାର୍ଯ୍ୟ କରି ଆସିଥିଲେ । ୧୯୪୪ ମସିହାଠୁ, ଲେଖାଲେଖିରେ ସେ ପୁରା ସମୟ ଦେଉଛନ୍ତି । ୧୯୪୧ରୁ ୧୯୪୪ ଯାଏଁ, ଫ୍ରାନ୍ସର ଅବରୋଧ ଆନ୍ଦୋଳନରେ, ଜର୍ମାନ୍ର ନାଜୀମାନଙ୍କ ବିରୁଦ୍ଧରେ ସେ କାର୍ଯ୍ୟ କରିଥିଲେ । ସେମାନଙ୍କ ଦ୍ୱାରା ସେ କିଛି ଦିନ ପାଇଁ ବନ୍ଦୀ ମଧ୍ୟ ହୋଇଥିଲେ ।

୧୯୪୫ରେ ତାଙ୍କର ପ୍ରସିଦ୍ଧ ପୁସ୍ତକ 'ଅସ୍ତିତ୍ୱ ଓ ସ୍ୱବିଶୂନ୍ୟତା' ପ୍ରକାଶିତ ହୁଏ । ଏହି ଦାର୍ଶନିକ ଗ୍ରନ୍ଥରେ ସେ ହୁସର୍ଲ, ହାଇଡେଗାର୍, ଜାସ୍ପର୍ସଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଏ ବହି ପୂର୍ବରୁ, ୧୯୩୬ରେ, ଡେକାର୍ତ୍ତି, ହ୍ୟୁମ୍, ପ୍ରଭୃତି, ଦାର୍ଶନିକମାନଙ୍କ କଳ୍ପନା ବା ଇମେଜ୍ ନେଇ ମତକୁ ସମାଲୋଚନା କରି, 'କଳ୍ପନା' ବୋଲି ସେ ବହିଟିଏ ଲେଖିଥିଲେ । ଅନେକ ମୌଳିକ ଦର୍ଶନ ପୁସ୍ତକ ଛଡ଼ା ବହୁ ଉପନ୍ୟାସ, ନାଟକ ଓ ଗଳ୍ପର ସେ ପ୍ରଣେତା । ତାଙ୍କର ଦର୍ଶନ ବୁଝିବାପାଇଁ ତାଙ୍କ ଦାର୍ଶନିକ ଲେଖା ଛଡ଼ା ତାଙ୍କର ଗଳ୍ପ, ଉପନ୍ୟାସ ମଧ୍ୟ ପଠନୀୟ ।

କଟକର ମଧୁପୁର କୋଠିରେ ଉତ୍କଳ ବିଶ୍ୱବିଦ୍ୟାଳୟର ଲାଇବ୍ରେରୀ ଥିବା ବେଳେ ମୁଁ ବି. ଜେ. ବି. କଲେଜରେ ଦର୍ଶନ ଅଧ୍ୟାପକ ଭାବେ ଯୋଗ ଦେଇଥାଏ । ସେତେବେଳେ କଟକରେ ରହି ବସ୍‌ରେ ପ୍ରତିଦିନ ଭୁବନେଶ୍ୱର ଯିବା ଆସିବା କରୁଥାଏ । କଲେଜରୁ ଫେରିବା ପରେ ମୋର ଅଧିକାଂଶ ଦିନର ସନ୍ଧ୍ୟା କଟିଥାଏ ବିଶ୍ୱବିଦ୍ୟାଳୟର ଏହି ଲାଇବ୍ରେରୀରେ । ସାଙ୍ଗରେ ଅର୍ଥନୀତିର ଅଧ୍ୟାପକ ଶ୍ରୀ ସୁରେନ୍ଦ୍ର ନାଥ ମିଶ୍ର ଥାଆନ୍ତି । ସେହି ସମୟରେ ମୁଁ ସ୍ଥିତିବାଦ ଉପରେ ଓ ସାର୍ତ୍ରିଙ୍କ ଉପରେ ଗୁଡ଼ିଏ ଲେଖା ପଢ଼ିଥିଲି । ମୁଁ ଯାହା ପଢ଼େ ସୁରେନ୍ଦ୍ର ବାବୁଙ୍କୁ କୁହେ, ସେ ଯାହା ପଢ଼ନ୍ତି

ମୋତେ ଲୁହନ୍ତି । ଦୁହିଁଙ୍କର ଆଲୋଚନା ମଧୁପୁର କୋଠିରୁ ଗୋଟିଏ ଗୋଟିଏ ପାଦରେ ଲମ୍ବି ଯାଏ, ଧନେ ଧନେ କଣ୍ଟକ ଷ୍ଟେସନକୁ ବା ଏସିସ୍ଟାନ୍ ହୋଟେଲକୁ । ଦର୍ଶନ ଓ ସାହିତ୍ୟର ସମ୍ପର୍କ ନେଇ ତାଙ୍କ ସହ ମୋର ବହୁବାର ଆଲୋଚନା ହୋଇଛି । ଟରଣ୍ଟୋ ଆସିବା ପରେ ତାଙ୍କଠୁଁ ମୁଁ ନିୟମିତ ଚିଠି ପାଉଥିଲି । ଟରଣ୍ଟୋ ଆସିବା ପରେ ସ୍ଥିତିବାଦ ଉପରେ ଗବେଷଣା ନ କରି ନୈତିକତାର ଭାଷା ଉପରେ ମୁଁ ଗବେଷଣା କରିବା ତାଙ୍କ ପାଇଁ ଆଶ୍ଚର୍ଯ୍ୟର କଥା ହୋଇଥିବ । କିନ୍ତୁ ଦର୍ଶନର ବହୁ ଅଙ୍ଗ ମଧ୍ୟରୁ ନୀତିଶାସ୍ତ୍ର ଉପରେ ହିଁ ସ୍ଥିତିବାଦୀ ଦାର୍ଶନିକମାନେ ଜୋର୍ ଦେଇଛନ୍ତି । ଦର୍ଶନର ନୀତିଶାସ୍ତ୍ର ହିଁ ଦର୍ଶନ ଓ ସାହିତ୍ୟର ମିଳନ ସେତୁ ।

ସାର୍ତ୍ତ୍ରି ପ୍ରଥମେ ଔପନ୍ୟାସିକ; ସେ **L' Etre et Le Neant** ଦର୍ଶନ ଗ୍ରନ୍ଥ ଲେଖିବା ପୂର୍ବରୁ ଦୁଇଟି ଉପନ୍ୟାସ ଲେଖି ସାରିଥିଲେ । ତେବେ ଦର୍ଶନ ଓ ଉପନ୍ୟାସ ମଝିରେ ବ୍ୟବଧାନ ସେ ଅଣନ୍ତି ନାହିଁ । ସେଥିପାଇଁ ତାଙ୍କୁ ସମାଲୋଚନା କରାଯାଇଛି । କିନ୍ତୁ ତାଙ୍କର ଦର୍ଶନ ଏପରି ଯେ ତାହା କେବଳ ପ୍ରବନ୍ଧ ଆକାରରେ ପ୍ରକାଶିତ ହେବାର କିଛି ଯଥାର୍ଥତା ଅଛି ବୋଲି ସେ ଭାବନ୍ତି ନାହିଁ । ଉପନ୍ୟାସ ଭିତରେ ମାନବ ଚରିତ୍ରକୁ ବିଶ୍ଳେଷଣ କରୁ କରୁ ସେ ତାଙ୍କର ବହୁ ଦାର୍ଶନିକ ତତ୍ତ୍ୱ ପାଇ ପାରିଛନ୍ତି । ବୁର୍ଜୁଆ ଲୋକଟିଏ ହେବାଠୁ ପାଗଳ ହୋଇଯିବା ଭଲ ବୋଲି ସେ ଗୋଟିଏ ଗପରେ କହିଛନ୍ତି । ସେହିପରି ମଣିଷ ନିଜର ପରିସ୍ଥିତି ସହ ଯେପରି ହେଉ ପଛେ ପରିଚିତ ହେବା ଉଚିତ ବୋଲି ଆଉ ଗୋଟିଏ ଗପରେ ସେ ମତ ଦେଇଛନ୍ତି । ପରିସ୍ଥିତିର ପରିଚୟ ପାଉ ପାଉ ମଣିଷକୁ ମଣିଷ ହନ୍ତା ହେବାକୁ ପଡ଼ିଲେ ମଧ୍ୟ ତାହା କ୍ଷମଣୀୟ; କିନ୍ତୁ ଅଜ୍ଞାନତା କେବେହେଲେ କ୍ଷମଣୀୟ ନୁହେଁ । 'ନସିଆ' ଉପନ୍ୟାସରେ 'ସଂସାରର ଅଭେଦ୍ୟତା', ସଂସାରକୁ ବର୍ଣ୍ଣନା କରିବା କିପରି ଅସମ୍ଭବ ତାହା ବର୍ଣ୍ଣନା କରାଯାଇଛି । ବସ୍ତୁଠାରୁ, ଅର୍ଥଠାରୁ, ଶବ୍ଦାବଳୀ ସ୍ୱତନ୍ତ୍ର ହୋଇଯିବାର ଭୟାନକତା 'ନସିଆ' ଉପନ୍ୟାସର ବିଷୟ ବସ୍ତୁ । ତାଙ୍କର ସବୁ ଲେଖାରେ ଦର୍ଶନ ନେଇ କିଛି ନା କିଛି ତତ୍ତ୍ୱ ନିହିତ ଅଛି ବୋଲି ବହୁ ସମାଲୋଚକ-ମାନଙ୍କର ମତ । ସେଥିପାଇଁ ସାହିତ୍ୟ ଆଲୋଚକମାନେ ତାଙ୍କୁ ସମାଲୋଚନା କରିଛନ୍ତି । ସେହିପରି ଅନେକ ଦାର୍ଶନିକ ଦର୍ଶନ ନାମରେ ସେ କେବଳ ସାହିତ୍ୟ ଲେଖିଛନ୍ତି ବୋଲି ତାଙ୍କର ଲେଖାକୁ ଗୁରୁତ୍ୱ ଦିଅନ୍ତି ନାହିଁ । କିନ୍ତୁ ସାହିତ୍ୟ ଓ ଦର୍ଶନ ଉଭୟରେ ସେ ଜଣେ ଯୁଗସ୍ରଷ୍ଟା ବୋଲି ମଧ୍ୟ ତୃତୀୟ ମତ ରହିଛି । ନୋବେଲ କମିଟି ଏହି ତୃତୀୟ ମତକୁ ପୋଷଣ କରି ତାଙ୍କୁ ନୋବେଲ ପୁରସ୍କାର ଦେଇଥିଲେ ।

ସାର୍ତ୍ତ୍ରିଙ୍କ ଦର୍ଶନ ବୁଝିବା ପାଇଁ କଳ୍ପନା ବା ଇମେଜ ଉପରେ ତାଙ୍କର ମତକୁ ପ୍ରଥମେ ଦେଖାଯାଉ । ପୂର୍ବସୂରୀମାନେ କଳ୍ପନାକୁ, ମଣିଷ ମନକୁ ଚେତନା

ଭିତରର ଏକ ପଦାର୍ଥ ବୋଲି ଭାବୁଥିଲେ । ସାଧାରଣ ଲୋକଙ୍କର ମଧ୍ୟ ଏହି ବିଶ୍ୱାସ । ଚେତନାକୁ ଏକ ବାକ୍ସ ଓ ଭାବରାଜିକୁ ସେ ଭିତରର ଗୁଡ଼ାଏ ଜିନିଷ ବୋଲି ଲୋକେ ଭାବିଥାଆନ୍ତି । ସାର୍ତ୍ତ୍ରେ ଚେତନା ପାଇଁ ଭିତର ଓ ବାହାର, ଏହି ଦୁଇଟି ପ୍ରତ୍ୟୟକୁ ଆଲୋଚନା କରି ଏହି ମତର ବିରୋଧ କରନ୍ତି । ଭାବନା ବା କଳ୍ପନା ଏକ ପ୍ରକାରର ଚେତନା—କିନ୍ତୁ ସେମାନେ ଚେତନା ଭିତରର କେତେଗୁଡ଼ିଏ କଥା ନୁହଁନ୍ତି । ପୁରୁଣା ମତକୁ ସାର୍ତ୍ତ୍ରେ କହନ୍ତି—"ଭିତରେ ବ୍ୟାପ୍ତ ଥିବାର ଭ୍ରାନ୍ତି ।" ଧରିଯାଉ, ମୁଁ ରାମଙ୍କ କଥା ଭାବିଲି । ଏଠି ମୋ ଚେତନା ଭିତରେ ରାମ ବା ରାମଙ୍କ ଚିତ୍ର ନାହିଁ । ଏପରି କହିଲେ ବେଶି ଠିକ୍ ହେବ—ରାମଙ୍କ କଳ୍ପନାର-ଚେତନା ବା ରାମଙ୍କୁ କଳ୍ପନା-କରୁଥିବା-ଚେତନା ଏକ ଚିତ୍ରର ନୁହେଁ, ଯାହା ଚେତନା ଭିତରେ ରହି, ରାମଙ୍କର ପ୍ରତିନିଧିତ୍ୱ କରେ । ରାମଙ୍କ ଚେତନା ହେଉଛି, ରାମଙ୍କ-କଳ୍ପନା-କରୁଥିବା-ଚେତନା । ଏହି ମତ ପୋଷଣ କରି, ଭାଷା ବିଶ୍ଳେଷକ ଦାର୍ଶନିକମାନଙ୍କ ପରି, ସେ "ବସ୍ତୁର ଦ୍ୱୈତୀକରଣ" ଧାରଣାକୁ ତ୍ୟାଗ କରିଥିଲେ ।

ଚେତନାର ସ୍ୱରୂପ ଗୁଣ ଦୁଇଟି—ଅସ୍ତିତ୍ୱ ଓ ନାସ୍ତିତ୍ୱ । ଯାହା ଅଛି ତାକୁ ତ ଚେତନା ଗ୍ରହଣ କରେ, ପ୍ରକାଶ କରେ, ଯାହାର ଅସ୍ତିତ୍ୱ ନାହିଁ, ଯାହା ଅଭାବ—ତାକୁ ମଧ୍ୟ କଳ୍ପନା କରିବାପାଇଁ ଚେତନାର ଶକ୍ତି ଅଛି । ଏହି ଶକ୍ତିରୁ ହିଁ ଜଣାଯାଏ ଯେ, ଚେତନା ସ୍ୱାଧୀନତା ପାଇଁ ଉନ୍ମୁଖ । ବାସ୍ତବତାକୁ ଅତିକ୍ରମ କରିବାପାଇଁ ଚେତନା ସର୍ବଦା ଚେଷ୍ଟିତ । ସେଇଥିପାଇଁ ଏହାର ସ୍ୱରୂପ ଗୁଣ ହେଉଛି ନାସ୍ତିତ୍ୱ । ଚେତନା ପଛଆଡ଼େ, ଚେତନାତିକାନ୍ତ, ଅହଂ ପଦାର୍ଥ କିଛି ଅଛି କି ? ଉଦାହରଣ ସ୍ୱରୂପ ମୁଁ ନବଗୁଞ୍ଜରର କଳ୍ପନା କଲେ ବର୍ତ୍ତମାନ ଦୁଇଟି ଜିନିଷ ଅଛି କି —ଅଭିପ୍ରେତ ନବଗୁଞ୍ଜର ଓ ଅଭିପ୍ରାୟ କରୁଥିବା ଅହଂ ପଦାର୍ଥ ? ନାଁ, କଳ୍ପନା—ନବଗୁଞ୍ଜର ହିଁ କେବଳ ଅଛି ? ସାର୍ତ୍ତ୍ରେ ଦ୍ୱିତୀୟ ମତାବଲମ୍ବୀ । "ବସ୍ତୁ ଦ୍ୱୈତୀକରଣ" ମତ ବର୍ଜ୍ଜନ ସହ ଏହି ମତ ଅଙ୍ଗାଙ୍ଗୀଭାବେ ସମ୍ପୃକ୍ତ । ଚେତନା ସର୍ବଦା ସ୍ୱଚ୍ଛ । ଏହି ଚେତନା ପାଇଁ ହିଁ ଦୃଶ୍ୟଧାରା ବା ଫେନୋମେନା । ଦୃଶ୍ୟଧାରା ଛଡ଼ା ଆଉ କିଛି ନାହିଁ । ଗୋଟିଏ ଦୃଷ୍ଟିକୋଣରୁ ଏହା ଚେତନା, ଅନ୍ୟ ପକ୍ଷେ ଏହା ଦୃଶ୍ୟ ଧାରା—ପ୍ରାତିଭାସିକ—ବ୍ୟାବହାରିକ-ଧାରା ସମଷ୍ଟି । ତେଣୁ ଚେତନା ସର୍ବଦା କୌଣସି ଦୃଶ୍ୟ ଧାରାର ଚେତନା । ଯଦି ଚେତନାରେ ପ୍ରକାଶିତ ହେବାପାଇଁ କିଛି ନାହିଁ, ତାହାହେଲେ ଚେତନା ମଧ୍ୟ ନାହିଁ । ଏହା ହିଁ ମୃତ୍ୟୁ । ଗୋଟିଏ କଥାର ଯୋଡ଼ିଏ ସୀମାନ୍ତ—ଦୃଶ୍ୟଧାରା, ଚେତନା । ଦୃଶ୍ୟଧାରାକୁ ସାର୍ତ୍ତ୍ରେ କୁହନ୍ତି ବିଙ୍ଗ-ଇନ୍-ଇଟ୍‌ସେଲଫ ବା ସ୍ୱସ୍ଥିତିମୂଳକ ପଦାର୍ଥ ଓ ଚେତନାକୁ କୁହନ୍ତି, ବିଙ୍ଗ୍-ଫର-ଇଟ୍‌ସେଲଫ ବା ସ୍ୱୋଦ୍ଦିଷ୍ଟାସ୍ତିମୂଳକ ତତ୍ତ୍ୱ ।

ଭ୍ରାନ୍ତିମୂଳକ ପଦାର୍ଥ ଘନ, ନିବିଡ଼, ଅସୀମ ଭାବେ ସାନ୍ଦ୍ର । କର୍ମଠ ନୁହେଁ କି ନିଷ୍କ୍ରିୟ ନୁହେଁ, ପୁଣି ନିଜ ସହ ସମ୍ପର୍କଶୂନ୍ୟ ଓ ଅନିର୍ଦ୍ଦିଷ୍ଟ । କୌଣସିଥିରୁ ଏହା ପ୍ରାପ୍ତ କରାଯାଇ ପାରିବ ନାହିଁ—କୌଣସି ନିୟମରୁ ନୁହଁ କି କୌଣସି ସମ୍ଭାବନାରୁ ନୁହଁ । ଏହା ସୃଷ୍ଟ ନୁହଁ କି ଏହାକୁ ଈଶ୍ବର ତିଆରି କରିଛନ୍ତି ବୋଲି ଏହାଠି କୌଣସି ଲକ୍ଷଣ ନାହିଁ । ନିଜକୁ ନିଜେ ବି ଏହା ସୃଷ୍ଟି କରିନାହିଁ । କେବଳ ଏହା ଅଛି । ତେଣୁ ସବୁ ସମ୍ଭବ ଅସମ୍ଭବରୁ ଏହା ଅଲଗା । ଏହାର ଦୁଇଟି ବିଭାଗ କରାଯାଇ ପାରିବ । ଉପସ୍ଥିତ ଦୃଶ୍ୟଧାରା ଓ ଅନୁପସ୍ଥିତ ଦୃଶ୍ୟଧାରା । ଦୃଶ୍ୟଧାରା ବା ଭ୍ରାନ୍ତିମୂଳକ ପଦାର୍ଥର ଭିତର ବୋଲି କିଛି ନାହିଁ ।

ଅଭାବର ସୃଷ୍ଟି ଚେତନା ଯୋଗୁଁ, ଚେତନା ସବୁବେଳେ ନିଜର ଇତିହାସକୁ ଅସ୍ୱୀକାର କରି କରି ଯାଏ । ଚେତନା ସ୍ୱେଚ୍ଛିଷ୍ଟାନ୍ତିମୂଳକ । ଏହାର ଦୃଢ଼ତ୍ୱ ନାହିଁ କି ସ୍ଥିରତା ନାହିଁ । ଏହା ବିଷୟରେ ଯାହା କୁହାଯିବ, ତାଠୁ ଚେତନା ସବୁବେଳେ ପୃଥକ୍ । ମୁଁ ସବୁବେଳେ ମୋର ଏସେନ୍‌ସ ବା ସତ୍ତ୍ୱର ବାହାରେ ରହିବାକୁ ବାଧ୍ୟ, କାରଣ ଏହା ହିଁ ମୋର ସ୍ୱାଧୀନତା । ଆଉ ସ୍ୱାଧୀନତା ହିଁ ମଣିଷର ପ୍ରକୃତି । ସବୁ ସଂସ୍କାର ଓ ଇତିହାସର ଊର୍ଦ୍ଧ୍ୱରେ ମୁଁ । ସେଥିପାଇଁ ସଂସ୍କାର କି ଇତିହାସ ମୋତେ ପ୍ରଭାବିତ କରିବା କଥା ମିଛ । ଆଉ ସେଇଥିପାଇଁ ମୋର ସନ୍ତାପ ବା ଆନଗୁଇସ । ଏହି ସନ୍ତାପରୁ ରକ୍ଷା ପାଇବା ପାଇଁ କୌଣସି ପରିସ୍ଥିତିରେ ନିଜେ ପସନ୍ଦ କରି, ନିର୍ବାଚନ କରି କୌଣସି କାର୍ଯ୍ୟ କଲାବେଳେ ନିଜକୁ ସଂସ୍କାର କି ଇତିହାସ ଦ୍ୱାରା ପ୍ରଭାବିତ ବୋଲି ଭାବିବା ଦ୍ୱାରା, ନିଜକୁ ବସ୍ତୁରେ ପରିଣତ କରି ଦିଆଯାଏ । ଆଉ ଏପରି କରି ମଣିଷ ନିଜକୁ ନିଜେ ଠକେ । ନିଜ ପ୍ରତି ନିଜର ଆନ୍ତରିକତାର ଅଭାବ ହିଁ ଅସାଧୁତା ବା ବ୍ୟାଡ୍ ଫେଥ୍ । ମିଛ ପରି ଅପ୍ରୀତିକର ସତ୍ୟକୁ ଲୁଚାଇବା ବା ସତ୍ୟକୁ ପ୍ରୀତିପୂର୍ଣ୍ଣ ମିଛରେ ପରିଣତ କରିବା ମଧ୍ୟ ଅସାଧୁତା । ସାର୍ତ୍ରଙ୍କ ମତରେ ଆନ୍ତରିକତାର ଅଭାବ ସବୁଠୁ ଖରାପ କଥା । ଏହା ହିଁ ବ୍ୟାଡ୍ ଫେଥ୍ । ଫ୍ରଏଡ଼ଙ୍କ ଅଚେତନ ମନକୁ ସାର୍ତ୍ର ମାନନ୍ତି ନାହିଁ । କିନ୍ତୁ ସାର୍ତ୍ରଙ୍କ ବ୍ୟାଡ୍ ଫେଥ୍ ପ୍ରତ୍ୟୟଟି ଫ୍ରଏଡ଼ଙ୍କ ଅଚେତନ ମନର କାର୍ଯ୍ୟ କରିଥାଏ ।

ଦୁଇଟି ଚେତନାର ସମ୍ପର୍କ ସବୁବେଳେ ଦ୍ୱନ୍ଦ୍ୱ । ମୁଁ ଅନ୍ୟକୁ ଖୋଜିଲେ ସେ ଗୁଳିଯାଏ, ମୁଁ ଯାହା ପାଏ, ତାହା ଏକ ବସ୍ତୁ; କାରଣ ମୁଁ ତା' ଉପରେ ଗୁଣ, ଧର୍ମ, ପ୍ରକୃତି ଆରୋପ କରିଥାଏ । ତଦ୍ୱାରା ଅନ୍ୟ ବ୍ୟକ୍ତିର ସ୍ୱାଧୀନତା ଗୁଳିଯାଏ । ସେହିପରି ସେ ମୋତେ ଖୋଜିଲେ, ମୁଁ ଗୁଳିଯାଏ, ରହେ ଏକ ବସ୍ତୁ । କାରଣ ଅନ୍ୟର ଚାହାଣୀ ମତେ ବସ୍ତୁରେ, ଦ୍ରବ୍ୟରେ ପରିଣତ କରିଦିଏ, ମୋର ସ୍ୱାଧୀନତା ନେଇଯାଏ,

ମୋ ଉପରେ ଅପେକ୍ଷି ଦିଏ, ପ୍ରକୃତି, ଗୁଣ, କର୍ମ । ମଣିଷ ଏକ ଅସାମାଜିକ ଐତିହାସିକ ଜୀବ । ସାର୍ତ୍ରିଙ୍କ ଏହି ମତ ମାର୍କସଙ୍କ ମତଠୁ ଭିନ୍ନ ।

କେବଳ ଦୃଶ୍ୟଧାରା ହିଁ ଅଛି । ଏହି ସଂସାର ପଛଆଡ଼େ, ଗୁପ୍ତରେ ଆଉ ଗୋଟିଏ ସଂସାର ଥିବା ମତର ସାର୍ତ୍ରି ଘୋର ବିରୋଧୀ । ସ୍ଥିତି କିଛି ନୁହଁ କେବଳ ଦୃଶ୍ୟଧାରା ବା ପ୍ରାତିଭାସିକ—ବ୍ୟାବହାରିକ—ଧାରା ସମଷ୍ଟି । ଏଥିରେ ଭିତର ବାହାର ଭେଦ ନାହିଁ । ଏହା ଅନନ୍ତ । ଈଶ୍ୱର ବୋଲି ମଧ୍ୟ କିଛି ନାହିଁ । ମୂଲ୍ୟ ଖୋଜିବା ଓ ପ୍ରକାଶ କରିବାରେ ହିଁ ମଣିଷର ଐଶ୍ୱର୍ଯ୍ୟ ।

ସଂସାର ନେଇ ଏପରି କହିବା ପରେ ମଣିଷ ନେଇ ମତଟିଏ ସ୍ୱତଃ ଅନୁଗମନ କରେ । ବହୁ ଉପନ୍ୟାସ ଓ ନାଟକରେ ସାର୍ତ୍ରି ମଣିଷ ନେଇ ଏହି ନିହିତ କଥାଟିକୁ ପ୍ରକାଶ କରିଛନ୍ତି । ମଣିଷ ତା'ର କ୍ରିୟାଦ୍ୱାରା ହିଁ ବିଚାର୍ଯ୍ୟ । ନୈତିକ ମୂଲ୍ୟାଙ୍କନ ପାଇଁ କାହାର ଅଭିପ୍ରାୟ କି ଉଦ୍ଦେଶ୍ୟ ବିଚାର୍ଯ୍ୟ ନୁହେଁ । ଅଭିପ୍ରାୟ ଉପରେ ଜୋର ଦେଲେ ବହୁ ଅସାଧୁତା ସୃଷ୍ଟି ହୁଏ ।

ସାର୍ତ୍ରି ବୁର୍ଜୁୟା ସଭ୍ୟତାର ଘୋର ବିରୋଧୀ—କଥାରେ କେବଳ ନୁହଁ, କାର୍ଯ୍ୟରେ ମଧ୍ୟ । ସେଥିପାଇଁ ସୁବିଧା ପାଇବା ମାତ୍ରେ ସେ ତାଙ୍କର ମତକୁ କାର୍ଯ୍ୟରେ ପ୍ରକାଶ କରନ୍ତି । ଉଦାହରଣ ସ୍ୱରୂପ ସେ ନିଜେ ବିବାହ ନ କରି ମଧ୍ୟ ଜଣେ ପ୍ରସିଦ୍ଧ ଲେଖିକା ସାଇମନ୍ ଡ଼ି ବୁଭ୍ଙ୍କ ସହ ଦାମ୍ପତ୍ୟ ଜୀବନ ଯାପନ କରନ୍ତି । ବୁର୍ଜୁୟା ଲୋକଙ୍କୁ "ଗୁଣ୍ଡା" ବୋଲି କହିବାକୁ ସାର୍ତ୍ରି ପଶ୍ଚାତ୍‌ପଦ ହୋଇ ନାହାନ୍ତି । ତାଙ୍କର ସହଧର୍ମିଣୀ ସାଇମନ୍ ବୁଭ୍ ନିଜେ ଜଣେ ପ୍ରସିଦ୍ଧ ଲେଖିକା । ସାର୍ତ୍ରି ଓ ସାଇମନ୍ ବୁଭ୍ଙ୍କର ସନ୍ତାନ ସନ୍ତତି କେହି ନାହାନ୍ତି । କିନ୍ତୁ ଅସଂଖ୍ୟ ଯୁବକ ଯୁବତୀଙ୍କୁ ସ୍ନେହ ଦେଇ, ଆର୍ଥିକ ସାହାଯ୍ୟ ଦେଇ, ଲାଳନ ପାଳନ କରି, ସେମାନେ ସନ୍ତାନ ସନ୍ତତି ନଥିବା ଦୁଃଖକୁ ଭୁଲି ଯାଇଛନ୍ତି । ସାଇମନ୍ ଡ଼ି. ବୁଭ୍ ସାର୍ତ୍ରିଙ୍କ ମତକୁ ପ୍ରସାର କରିବା ପାଇଁ ବହୁ ଲୋକପ୍ରିୟ ପୁସ୍ତକ ରଚନା କରିଛନ୍ତି । ସାର୍ତ୍ରି ନିଜକୁ ମାର୍କସବାଦୀ ବୋଲି କୁହନ୍ତି, କମ୍ୟୁନିଷ୍ଟ ନୁହଁ । ବିଶ୍ୱରେ ଓ ମତ ପ୍ରକାଶ କରିବାରେ, ସ୍ୱାଧୀନତାକୁ ସେ ମହତ୍ତ୍ୱ ଦେଉଥିବାରୁ, ସେ କମ୍ୟୁନିଷ୍ଟମାନଙ୍କ ଅନୁଚର ହୋଇପାରି ନାହାନ୍ତି । କମ୍ୟୁନିଷ୍ଟମାନେ ମାର୍କସଙ୍କୁ କଦର୍ଥ କରିଛନ୍ତି ବୋଲି ତାଙ୍କର ମତ । ସାର୍ତ୍ରି ନିଜର ସ୍ଥିତିବାଦ ଦର୍ଶନକୁ ମାର୍କସବାଦର ଏକ ଅଙ୍ଗରୂପେ ଗ୍ରହଣ କରନ୍ତି । ତାଙ୍କ ମତରେ ପ୍ରତ୍ୟେକ କାଳରେ ଗୋଟିଏ ଦର୍ଶନ ହିଁ ଥାଏ, ଯାହା ଯୁଗର ଅଭିରୁଚି ଓ ପ୍ରକୃତିକୁ ଯଥାର୍ଥ ପ୍ରତିଫଳନ କରିଥାଏ । ଏ ଶତାବ୍ଦୀରେ ମାର୍କସଙ୍କ ଦର୍ଶନ ତାହା କରୁଛି । ମାର୍କସଙ୍କ ବ୍ୟବହୃତ ଏକ ପ୍ରତ୍ୟୟ-ହସ୍ତ୍ତ୍ୱ ଶୂନ୍ୟତା ବା

ବିଚ୍ଛିନ୍ନତା ବା ଆଲିନଏସନ୍‌ର, ସାର୍ତ୍ତ୍ରି ଏହିପରି ଅର୍ଥ କରନ୍ତି—ମୋ କାର୍ଯ୍ୟର ଫଳାଫଳ, ଯଦି ଅନ୍ୟ କେହି ସେହି କାର୍ଯ୍ୟ କଲେ ଯେପରି ହୋଇଥାନ୍ତା ସେହିପରି, ତାହାହେଲେ, ମୋ କାର୍ଯ୍ୟ ସ୍ୱତ୍ତ୍ୱ ଶୂନ୍ୟ । ଏପରି କାର୍ଯ୍ୟରେ ମୁଁ ମୁଁ ନୁହେଁ, ମୁଁ ଅନ୍ୟମାନେ ବା ଅନ୍ୟ କେହି । ଜନମତ ଲୋକକୁ ପ୍ରଭାବିତ କରି ତାକୁ ଏହିପରି ସ୍ୱତ୍ତ୍ୱ-ଶୂନ୍ୟ କରିପକାଏ । ଯୁକ୍ତିବାଦ ଅର୍ଥନୀତିରେ ଜିନିଷ ତିଆରି ପାଇଁ ଯାହା ବ୍ୟବହୃତ ହେଉଛି, ତାହା ମଣିଷ ମଣିଷ ଭିତରେ ସ୍ୱତ୍ତ୍ୱ-ଶୂନ୍ୟତା ହିଁ ଆଣୁଛି ।

ନିଜର ସ୍ଥିତିବାଦକୁ ସାଧାରଣଙ୍କୁ ବୁଝାଇବା ପାଇଁ ୧୯୪୬ରେ 'ସ୍ଥିତିବାଦ ହିଁ ମାନବ ବାଦ' ବୋଲି ସାର୍ତ୍ତ୍ରି ଗ୍ରୋଟିଏ ବହିଟିଏ ଲେଖିଥିଲେ । ମଣିଷ ମାତ୍ରେ ହିଁ ସନ୍ତାପ, କାରଣ ସେ ଜାଣେ ଯେ କେତେ ବେଶି ସ୍ୱାଧୀନ, ତେଣୁ କେତେ ବେଶି ଦାୟିତ୍ୱ ତା' ଉପରେ । ପୂର୍ବ ନିର୍ଧାର୍ଯ୍ୟ ହୋଇ କିଛି ନିୟମ ନାହିଁ, ମୂଲ୍ୟ ନାହିଁ । ମଣିଷ ପରିସ୍ଥିତିର ସମ୍ମୁଖୀନ ହୋଇ ତା'ର ସ୍ୱାଧୀନତାର ମାଧ୍ୟମରେ, ଯାହା ପସନ୍ଦ କରି କାର୍ଯ୍ୟ କରିବ ତାହା ହିଁ ଶ୍ରେୟ, ମୂଲ୍ୟ, ନୀତି । କିନ୍ତୁ ମଣିଷର ପ୍ରତ୍ୟେକ କାର୍ଯ୍ୟ ମଣିଷର ପରିଭାଷା ସୃଷ୍ଟି କରେ—ମୁଁ ଯାହା କରୁଛି, ଯେ କୌଣସି ଲୋକ ଯାହା କରୁଛି—ତାହା ମଣିଷର ହିଁ ଚିତ୍ର ହେଉଛି—I am responsible for myself and for everyone, and I create a certain image of man which I choose, in choosing myself I choose man. ସେଥିପ୍ରତି ମୁଁ ସଚେତନ ହେବା ଉଚିତ । ଏହି ସଚେତନତା ମଣିଷ ଭିତରେ ଉଦ୍‌ବେଗ ସୃଷ୍ଟି କରେ । ଉଦ୍‌ବେଗ ଭୟ ନୁହେଁ, କାରଣ ଉଦ୍‌ବେଗର କିଛି ବାହ୍ୟ କାରଣ ନଥାଏ । ଉଦ୍‌ବେଗଜନିତ ଯନ୍ତ୍ରଣାକୁ ଡରି ମଣିଷ ତା'ର ସ୍ୱାଧୀନତାକୁ ଭୁଲି ଯିବାକୁ ଚେଷ୍ଟା କରେ । ଗତାନୁଗତିକ ନିୟମକୁ ସେ ସେଇଥିପାଇଁ ମାନି ଚଳେ । କିନ୍ତୁ ଏହା ଏକ ପ୍ରକାରର ଆତ୍ମ-ପ୍ରବଞ୍ଚନା ।

ସାର୍ତ୍ତ୍ରି ମଣିଷ ସତ୍ତାର ବର୍ଣ୍ଣନାତ୍ମକ ଓ ବିଶ୍ଳେଷଣାତ୍ମକ ଢଙ୍ଗରେ ବ୍ୟାଖ୍ୟାନ କରିଛନ୍ତି । ପ୍ରଚଳିତ ଭାଷା ବିଶ୍ଳେଷଣାତ୍ମକ ଦର୍ଶନ ବା ଅର୍ଡିନାରି ଲାଙ୍ଗୁଏଜ ଫିଲୋସଫି ସମାନ୍ତରାଳ ଢଙ୍ଗରେ ଯାଞ୍ଚ କରି ସାର୍ତ୍ତ୍ରିଙ୍କ ବହୁ ମତକୁ ସ୍ୱୀକାର କରେ । କିନ୍ତୁ ସାର୍ତ୍ତ୍ରି କେବଳ ଜଣେ ଦାର୍ଶନିକ ନୁହନ୍ତି । ସେ ଜଣେ ମନସ୍ତାତ୍ତ୍ୱିକ ଓ ନୀତି ଶିକ୍ଷକ ମଧ୍ୟ । ସବୁ ଲେଖାରେ ସେ ମଣିଷ ସମାଜକୁ, ମଣିଷକୁ, ପରିବର୍ତ୍ତନ କରିବା ପାଇଁ ଉଦ୍ଦେଶ୍ୟ ରଖିଛନ୍ତି । ସେଇଥିପାଇଁ ପ୍ରଚଳିତ-ଭାଷା ବିଶ୍ଳେଷଣ ଦର୍ଶନକୁ ସେ ଆଦର ପାରି ନାହାନ୍ତି । କାରଣ ସମାଜକୁ ପରିବର୍ତ୍ତନ କରିବାକୁ ଇଚ୍ଛା କରୁଥିବା ଲୋକ ସମାଜର ସମସ୍ୟା ସହି ଏପରି ନିମଗ୍ନ ହୋଇ ରହେ ଯେ, ଭାଷା ବସ୍ତୁର ଆକାରକୁ କେବଳ ପ୍ରତିଫଳନ କରେ ବୋଲି ଭାବିବା, ତା ପାଇଁ ଦୁଷ୍କର ହୁଏ । ବସ୍ତୁରେ

ଆଦର୍ଶ ନେଇ ସଂଗ୍ରାମ ଚାଲିଛି । ଏହି ସଂଗ୍ରାମରେ ଦାର୍ଶନିକମାନେ, ସେମାନଙ୍କ ଉପରେ ପ୍ରୟୋଗ କଲେ ଗୋଟିଏ ଆଦର୍ଶ ଅନ୍ୟ ଆଦର୍ଶକୁ ଜିଣିବ, ସେହି କଥାରେ ମନ ଦେବା ଉଚିତ । ପ୍ରଚଳିତ ଭାଷାର ବିଶ୍ଳେଷଣରେ ନୁହି ।

ସାର୍ତ୍ତ୍ରିଙ୍କ ବହୁ କଥା ମୋତେ ଭଲ ଲାଗିଥିଲେ ମଧ୍ୟ ତାଙ୍କର ନିରୀଶ୍ବରତାକୁ ମୁଁ ଆଦୌ ଗ୍ରହଣ କରି ପାରି ନ ଥିଲି । ଯୁଦ୍ଧ ଧ୍ୱସ୍ତ ଦେଶରୁ ସୃଷ୍ଟି ହୋଇଥିବା ସ୍ଥିତିବାଦ ଦର୍ଶନକୁ ଆମେରିକା ଓ କାନାଡ଼ାରେ ମଧ୍ୟ ଲୋକେ ବିଶେଷ ଭାବେ ଗ୍ରହଣ କରିବା ମୁଁ ଦେଖିଲି ନାହିଁ । କିନ୍ତୁ ବିଶ୍ୱବିଦ୍ୟାଳୟଗୁଡ଼ିକରେ ସ୍ଥିତିବାଦ ଦର୍ଶନକୁ ଗୁରୁତ୍ୱ ଦେଇ ଚର୍ଚ୍ଚା କରାଯାଉଥିଲା । ରସେଲଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ସାର୍ତ୍ତ୍ରି International War Crimes Tribunal ରେ ୧୯୬୭ରେ ଯୋଗ ଦେଉଥିବା ଖବର ସମ୍ବାଦପତ୍ରମାନଙ୍କରେ ବାହାରିଲା । ଭିଏଟ୍‌ନାମ ଯୁଦ୍ଧରେ ଆମେରିକାର ସୈନ୍ୟମାନେ ଅକଥନୀୟ ଅତ୍ୟାଚାର କରୁଥିବା ସମ୍ବାଦ ଆମେ ମଝିରେ ମଝିରେ ପାଉଥିଲୁ । ସବୁ ପ୍ରକାର ନୂଆ ଅସ୍ତ୍ର ଶସ୍ତ୍ରର ପରୀକ୍ଷା ଆମେରିକା ଭିଏଟ୍‌ନାମ ଯୁଦ୍ଧରେ କରି ସେଗୁଡ଼ିକର ସଫଳତା ସମ୍ବନ୍ଧରେ ଅନୁଭୂତ ସଂଗ୍ରହ କରୁଥିବା ସମ୍ବାଦରେ ଆମମାନଙ୍କ ଦେହ ତାତି ଯାଉଥିଲା । ସାର୍ତ୍ତ୍ରିଙ୍କ ଦାର୍ଶନିକ ମତ ରସେଲ୍‌ଙ୍କ ଦାର୍ଶନିକ ମତ ଭିତରେ ଆକାଶ ପାତାଳ ପ୍ରଭେଦ । ତଥାପି ସାର୍ତ୍ତ୍ରିଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ 'ମଣିଷ ସମାଜର ଉନ୍ନତି ପାଇଁ, ବ୍ୟାକୁଳତା ଓ ଆନ୍ତରିକତା' ଯୋଗୁ ରସେଲ୍ ତାଙ୍କୁ ଟ୍ରିବ୍ୟୁନାଲ୍‌ର ଜଣେ ବିଚାରକ ରୂପେ ନିମନ୍ତ୍ରଣ କରିଥିଲେ । ସେହି ସମ୍ବାଦରେ ମୁଁ ବିଶେଷ ଖୁସୀ ହୋଇଥିଲି ।



# ମାର୍ଶାଲ ମାକ୍‌ଲୁହାନ୍

ଅଷ୍ଟ୍ରେଲିଆରୁ ଫାଦର୍ ମାକିନା ବୋଲି ଜଣେ ଯୁବକ କମନ୍‌ୱେଲଥ୍ ସ୍କଲର୍ ରୂପେ ଟରଣ୍ଟୋ ବିଶ୍ୱବିଦ୍ୟାଳୟକୁ ଆସି ଦର୍ଶନରେ ଗବେଷଣା କରୁଥିଲେ । ମୋର ବୟସର ହେବେ କିନ୍ତୁ ସର୍ବତ୍ୟାଗୀ ଖ୍ରୀଷ୍ଟିୟାନ୍ ସନ୍ନ୍ୟାସୀ । କ୍ୟାଥଲିକ ସମ୍ପ୍ରଦାୟର ଖ୍ରୀଷ୍ଟିୟାନ୍ । ଆଧୁନିକ ଭାଷା ବିଶ୍ଳେଷଣ ପଦ୍ଧତିକୁ ପ୍ରୟୋଗ କରି ସେ କ୍ୟାଥଲିକ୍ ସମ୍ପ୍ରଦାୟର ବହୁ କଥାକୁ ଓ ଧାର୍ମିକ ବିଶ୍ୱାସକୁ ଯୁକ୍ତି ସମ୍ମତ ବୋଲି ପ୍ରମାଣ କରିବାକୁ ଆଗ୍ରହୀ ଥିଲେ । ତାଙ୍କୁ କିନ୍ତୁ ସେତିକ କରିବାକୁ ବଡ଼ କଷ୍ଟ ହେଉଥିଲା । ଦିନେ ଦିନେ ସେ ବ୍ୟାକୁଳ ହୋଇ ମୋତେ ଭାରତୀୟ ଦର୍ଶନ ନେଇ ପଚାରନ୍ତି ଓ ସେ ଭାରତର ଏତେ ପାଖ ରାଜ୍ୟ ଅଷ୍ଟ୍ରେଲିଆର ବାସିନ୍ଦା ହୋଇ ବି ଭାରତୀୟ ଦର୍ଶନ ଜାଣି ନ ଥିବାରୁ ଦୁଃଖ ପ୍ରକାଶ କରନ୍ତି । ଭାରତୀୟ ଦାର୍ଶନିକମାନେ ଆଧୁନିକ ନିରୀଶ୍ୱରବାଦୀମାନଙ୍କ ଯୁକ୍ତିକୁ କିପରି ଖଣ୍ଡନ କରିବେ ତାହା ଜାଣିବା ପାଇଁ ତାଙ୍କର ବଡ଼ ଆଗ୍ରହ ଥିଲା । ଉପନିଷଦ ଓ ଶଙ୍କରଙ୍କର ଦର୍ଶନ ନେଇ ତାଙ୍କ ସହିତ ମୁଁ ଅନେକ ଥର ଆଲୋଚନା କରିଛି । ମୁଁ ଯେପରି ମୋ ମାଇନର୍ କୋର୍ସ ୱାର୍କ ରୂପେ 'ମଡର୍ଣ୍ଣ ପଲିଟିକାଲ୍ ଥଟ୍' ନେଇଥିଲି, ସେହିପରି ସେ 'ମାସ୍ କମ୍ୟୁନିକେଶନ୍' ବୋଲି ପେପର୍‌ଟିଏକୁ ତାଙ୍କର ମାଇନର୍ କୋର୍ସ ୱାର୍କ ରୂପେ ନେଇଥିଲେ । ସେହି କୋର୍ସଟିକୁ ପଢ଼ାଉଥାନ୍ତି କାନାଡ଼ାର ବିଖ୍ୟାତ ବୁଦ୍ଧିଜୀବୀ, ଟରଣ୍ଟୋ ବିଶ୍ୱବିଦ୍ୟାଳୟର 'କଲ୍‌ଚର୍ ଓ ଟେକ୍‌ନୋଲଜି' ବିଭାଗର ଡାଇରେକ୍ଟର ମାର୍ଶାଲ ମାକ୍‌ଲୁହାନ୍ । ଫାଦର୍ ମାକିନାଙ୍କଠୁ ମୁଁ ପ୍ରଥମେ ମାର୍ଶାଲ ମାକ୍‌ଲୁହାନ୍‌ଙ୍କ ବିଷୟରେ ଶୁଣିଲି । କ୍ରମେ ଟରଣ୍ଟୋର ବହୁ ଭଦ୍ରବ୍ୟକ୍ତି ତାଙ୍କର ବିଷୟ ନେଇ ଚର୍ଚ୍ଚା କରୁଥିବା ବିଷୟରେ ମୁଁ ସଚେତନ ହେଲି । ଅନେକ ତ ତାଙ୍କୁ ନିଉଟନ୍, ଡାରଉଇନ୍, ଆଇନ୍‌ଷ୍ଟାଇନ୍ ଓ ପାଭଲଭ୍‌ଙ୍କ ସମକକ୍ଷ ବୁଦ୍ଧିଜୀବୀ ରୂପେ ଗ୍ରହଣ କରୁଥିଲେ । ମୁଁ ତାଙ୍କୁ ଟି.ଭି. ସ୍କ୍ରିନ୍‌ରେ ମଧ୍ୟ ବହୁବାର ଦେଖିଲି, ସେଥିରେ ସେ ପ୍ରତ୍ୟେକ ଥର ତାଙ୍କର ଦର୍ଶନ ଆଲୋଚନା କରୁଥାଆନ୍ତି । ପତଳା ହୋଇ, ହାଡ଼ୁଆ, ଡେଙ୍ଗା ମଣିଷ, ଦେଖିବାକୁ ସେପରି କିଛି ଆକର୍ଷଣୀୟ ବ୍ୟକ୍ତିତ୍ୱ ତାଙ୍କର ନଥିଲା । ମୁଁ କିନ୍ତୁ ଏତେ ଲୋକ ତାଙ୍କ କଥା ଚର୍ଚ୍ଚା କରୁଥିବା ଦେଖି ତାଙ୍କର ବହି କିଣି ପଢ଼ିବାକୁ ଲାଗିଲି । ଫାଦର୍ ମାକିନାଙ୍କ ସହି

ତାଙ୍କର ଦର୍ଶନ ନେଇ ମଝେ ମଝେ କଥାବାର୍ତ୍ତା ହେଉଥାଏ । ଫାଦର୍ ମାକନା କହୁ ତାଙ୍କର ଦର୍ଶନ ସହ ଏକମତ ହେଉ ନ ଥାନ୍ତି ଯଦିଓ ଈଶ୍ୱରଙ୍କ ଉପରେ ବିଶ୍ୱାସକୁ ମାକ୍‌ଲୁହାନ୍ ବଡ଼ ବିଚିତ୍ର ଢଙ୍ଗରେ ପୁଣି ପ୍ରଚଳନ କରାଇବାକୁ ଚେଷ୍ଟା କରୁଥିବା କଥା ମାକନା ମୋତେ କହୁଥିଲେ । ତାଙ୍କ ମତରେ ଜର୍ମାନୀର ଦାର୍ଶନିକ ନିତ୍‌ସେଙ୍କ 'ଈଶ୍ୱର ମୃତ' ବାକ୍ୟଟିକୁ ଠିକ୍ ଢଙ୍ଗରେ ଲୋକେ ବୁଝିବା ଉଚିତ । ନିଉଟନ୍‌ଙ୍କ ଈଶ୍ୱର, ଯେ ଘଣ୍ଟାପରି ନିୟମରେ ଚାଲୁଥିବା ବିଶ୍ୱକୁ ନିର୍ମାଣ କରିଥିଲେ ଓ ସେହି ଘଣ୍ଟାରେ ଚାବି ଦେଇ ବିଶ୍ରାମ କରିବା ପାଇଁ ଚାଲି ଯାଇଥିଲେ, ସେଇ ଈଶ୍ୱର ମରି ଯାଇଛନ୍ତି । ତେଣୁ ନିଉଟନୀୟ ଈଶ୍ୱରଙ୍କୁ ଆଜିକାଲି କେହି ଖୋଜିଲେ ସେ ନିଶ୍ଚୟ ନିରାଶ ହେବେ । ପାଶ୍ଚାତ୍ୟ ସଭ୍ୟତାର ମୂଳଦୁଆ ପରି ଯେଉଁ ନିଉଟନୀୟ ବିଶ୍ୱ ଧାରଣା ଆଜି ଯାଏଁ କାମ କରି ଆସୁଥିଲା, ଆଜିକାଲି ଇଲେକ୍‌ଟ୍ରୋନିକସ୍ ଯୁଗରେ, ତାହା ଆଉ ନାହିଁ । କିନ୍ତୁ ଈଶ୍ୱର ଅଛନ୍ତି । ଅର୍ଥାତ୍ ଈଶ୍ୱରଙ୍କୁ ଓ ବିଶ୍ୱକୁ ଭିନ୍ନ ରୂପେ ଭାବିବାକୁ ହେବ । ତେଣୁ Keep in circulation that God is alive.

ମାର୍ଶାଲ ମାକ୍‌ଲୁହାନ୍ କାନାଡ଼ାର ମାନିଟୋବା ବିଶ୍ୱବିଦ୍ୟାଳୟ ଓ ଇଂଲଣ୍ଡର କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଗ୍ରାଜ ଥିଲେ । କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଗବେଷଣା କରି ସେ ଇଂରାଜୀ ସାହିତ୍ୟରେ ପିଏଚ୍. ଡି. ଡିଗ୍ରୀ ପାଇଛନ୍ତି । କାନାଡ଼ା ଓ ଆମେରିକାର ବହୁ ବିଶ୍ୱବିଦ୍ୟାଳୟରେ ସେ ଭିଜିଟିଙ୍ଗ୍ ପ୍ରଫେସର ରୂପେ କାମ କରିଛନ୍ତି । 'ମେକାନିକାଲ୍ ବ୍ରାଇଡ୍', 'ଗୁଟେନବର୍ଗ ଗାଲାକ୍‌ସି', 'ଅଣ୍ଡରଷ୍ଟାଣ୍ଡିଂ ମିଡ଼ିଆ' ତାଙ୍କର କେତୋଟି ବହୁ ଆଲୋଚିତ ପୁସ୍ତକ ।

ମ୍ୟାକ୍‌ଲୁହାନ୍ ମାନବ ସମାଜର ତିନୋଟି ଅବସ୍ଥାକୁ ନିର୍ଦ୍ଦେଶ କରି ତାଙ୍କର ଦର୍ଶନକୁ ପ୍ରତିପାଦିତ କରନ୍ତି । ତାଙ୍କ ମତରେ ଲିପିପୂର୍ବ ଅବସ୍ଥା ହିଁ ସମାଜର ପ୍ରାଥମିକ ଅବସ୍ଥା, ଯେତେବେଳେ ଲେଖିବା ଶୈଳୀ ଲୋକେ ଜାଣି ନଥିଲେ, ସେତେବେଳେ ବର୍ଣ୍ଣମାଳା ନଥିଲା । ସେହି ଯୁଗରେ ଶ୍ରବଣେନ୍ଦ୍ରିୟ ଉପରେ ଜୋର୍ ଦିଆ ଯାଉଥିଲା । ଲୋକେ ଶୁଣି ଶୁଣି ସବୁ ମନେ ରଖୁଥିଲେ । ଫଳରେ ସେତେବେଳେ କବିତାରେ ସଙ୍ଗୀତ ଥିଲା ଓ ସଙ୍ଗୀତରେ ହିଁ ଗୋଟାଏ ଜାତି ତା'ର ସକଳ ଜ୍ଞାନକୁ ସାଇତି ରଖିଥିଲା । ଗ୍ରୀସ୍‌ରେ ହୋମରଙ୍କ "ଇଲିୟାଡ଼" କାବ୍ୟ ଏହିପରି ଶୁଣି ଶୁଣି ମନେ ରଖିବା ପାଇଁ ରଚନା କରାଯାଇଥିଲା । ଏହି କାଳର ମଣିଷଙ୍କ ଅନୁପ୍ରାଣନା ଶକ୍ତିଶାଳୀ ଥିଲା । ଆବେଗ ପ୍ରଧାନ ଏହି ଲୋକମାନେ ଅସୀମ ଦିକ୍ ଓ ଅନନ୍ତ କାଳର ଧାରଣା ପୋଷଣ କରୁଥିଲେ ।

ମଧ୍ୟବର୍ତ୍ତୀ କାଳରେ ସମାଜରେ ଲିଖନ ଶୈଳୀ ଦେଖା ଦେଲା । ପ୍ଲେଟୋ ଏହି ଦ୍ୱିତୀୟ କାଳର ଲୋକ । ସେ ତାଙ୍କ 'ରିପବ୍ଲିକ' ଡାଏଲଗ୍‌ରେ କବିତାକୁ ସମାଲୋଚନା କରି ଏହି ପ୍ରାକ୍‌କାଳକୁ ହିଁ ତୀବ୍ର ସମାଲୋଚନା କରିଛନ୍ତି । ତାଙ୍କ ମତରେ ହୋମରଙ୍କ 'ଇଲିୟାଡ଼' ପରି କାବ୍ୟ ସଙ୍ଗୀତ ମାଧ୍ୟମରେ ଜ୍ଞାନର ଆଦାନ ପ୍ରଦାନ ଅସମ୍ଭବ । ଜ୍ଞାନ ଆହରଣ, ସଞ୍ଚୟନ ଓ ଜ୍ଞାପନ ପାଇଁ ପ୍ରତ୍ୟୟଗୁଡ଼ିକର ଶ୍ରେଣୀକରଣ ଅତ୍ୟାବଶ୍ୟକ । ମଣିଷର ହେଉ କି ବସ୍ତୁର ହେଉ,—ଯେ କୌଣସି ଜିନିଷର ପ୍ରକୃତି ନିରୂପଣ କରିବାକୁ ହେଲେ ତାହାର ଶ୍ରେଣୀକରଣ, ଲକ୍ଷଣ ନିରୂପଣ, ବିଭାଜନ, ପ୍ରଭୃତି ପ୍ରକ୍ରିୟା ଅତ୍ୟାବଶ୍ୟକ । ଲିପି ପ୍ରବର୍ତ୍ତନ ପରେ ହିଁ ଲୋକଙ୍କ ମଧ୍ୟରେ ବିଚାରଶୀଳତା ପ୍ରତି ଜୋର୍ ଦିଆଯାଇଛି । ବିଚାରଶୀଳତା ଅର୍ଥ କାର୍ଯ୍ୟ କାରଣ ସମ୍ପର୍କ ନେଇ ସଚେତନତା । ଲିପି ପୂର୍ବ ଅବସ୍ଥାରେ ଲୋକେ ଅନ୍ତର୍ଦର୍ଶନ ଉପରେ, ଅନ୍ତର୍ଜ୍ଞାନ ଉପରେ ବେଶୀ ଜୋର୍ ଦେଉଥିଲେ । ସେତେବେଳେ ସାମଗ୍ରିକ ଭାବେ ସକଳ କଥାକୁ ଆତ୍ମସ୍ଥ କରିବାକୁ ଚେଷ୍ଟା କରୁଥିଲେ ।

ସମାଜର ତୃତୀୟ ଅବସ୍ଥାରେ ବିଦ୍ୟୁତ୍‌ର (ଇଲେକ୍‌ଟ୍ରିସିଟି) ଆବିଷ୍କାର ହୋଇଛି । ଇଲେକ୍‌ଟ୍ରିସିଟିର ଜ୍ଞାନ ଆସିଯିବା ପରେ ମାନବ ଅନ୍ୟାନ୍ୟ ବହୁ ନୂଆ ଟେକ୍‌ନୋଲଜିର ଉଦ୍ଭାବନ କରିବାକୁ ସକ୍ଷମ ହୋଇଛି । ପ୍ରତ୍ୟେକ ଉଦ୍ଭାବନକୁ ମାନବର କୌଣସି ଗୋଟିଏ ଇନ୍ଦ୍ରିୟର ପ୍ରସାରଣ ରୂପେ ମାକ୍‌ଲୁହାନ୍ ନିଅନ୍ତି । ସଭ୍ୟତାର ଆରମ୍ଭରୁ ଏହି ଇନ୍ଦ୍ରିୟ ସମ୍ପ୍ରସାରଣ କାର୍ଯ୍ୟ ଚାଲିଛି । ଦର୍ଶନେନ୍ଦ୍ରିୟର ପ୍ରସାରଣ ହେଉଛି ଲେଖନ ପ୍ରକ୍ରିୟା ଓ ପୁସ୍ତକ, ତ୍ୱଗେନ୍ଦ୍ରିୟର ପ୍ରସାରଣ ସଂଖ୍ୟା-ସମୂହ ଓ ବସ୍ତ୍ର, ପାଦ ଇନ୍ଦ୍ରିୟର ପ୍ରସାରଣ ଶଗଡ଼ ଚକ, ମଟର ଚକ, ସାଇକେଲ ଚକ ପ୍ରଭୃତି; ଶେଷରେ ମାନବ ଶରୀରସ୍ଥ କେନ୍ଦ୍ରୀୟ ସ୍ନାୟୁ ତନ୍ତ୍ରର (ସେଣ୍ଟ୍ରାଲ୍ ନର୍ଭସ ସିଷ୍ଟମ୍) ପ୍ରସାରଣ ହେଉଛି ବୈଦ୍ୟୁତିକ ପରିପଥ (ଇଲେକ୍‌ଟ୍ରିକ୍ ସାର୍କୁଇଟି) । ପ୍ରୟୋଗ ବିଜ୍ଞାନ (ଟେକ୍‌ନୋଲଜି)ର ପ୍ରତ୍ୟେକ ଉଦ୍ଭାବନରେ ସମାଜର, ମଣିଷର କ୍ରିୟାକଳାପ ଓ ଭାବନାରେ ଚୂମୂଳ ପରିବର୍ତ୍ତନ ହୁଏ । ପ୍ରୟୋଗ ବିଜ୍ଞାନର ମାଧ୍ୟମ ହିଁ ଏହି ସବୁ ପରିବର୍ତ୍ତନର ଜନକ । ପ୍ରୟୋଗ ବିଜ୍ଞାନଗୁଡ଼ିକରେ ପ୍ରଚ୍ଛନ୍ନ ବିଷୟବସ୍ତୁରେ କିଛି ମହତ୍ତ୍ୱ ନାହିଁ, ସକଳ ମହତ୍ତ୍ୱ ମାଧ୍ୟମର ଆକାରିକ ବିଶେଷତାରେ । ତେଣୁ ମାଧ୍ୟମ ହିଁ ବାର୍ତ୍ତା, Medium is the Message. ମ୍ୟାକ୍‌ଲୁହାନ୍ ପରିଚିତ ସହ ସମ୍ପୃକ୍ତ ଏହି ମତଗୁଡ଼ିକୁ ପ୍ରମାଣ କରିବା ପାଇଁ ଅସଂଖ୍ୟ ଉଦାହରଣ ଓ ଯୁକ୍ତି ଦେଇଛନ୍ତି ।

ଯେ କୌଣସି ଟେକ୍‌ନୋଲଜିର ଉଦ୍ଭାବନ ମଣିଷର ପରିବେଶରେ ପରିବର୍ତ୍ତନ ଆଣିଥାଏ । ଚକର ପରିବେଶ ଆଉ ନାହିଁ, ଇଲେକ୍‌ଟ୍ରିକ୍, ଇଲେକ୍‌ଟ୍ରୋନିକ୍‌ସର ସହିତ ସାରକୁଇଟ୍ରିର ପରିବେଶ ଆସିଛି । କିନ୍ତୁ ଗୋଟିଏ ଟେକ୍‌ନୋଲଜି

ଅନ୍ୟଟିକୁ ପୂର୍ବ ବଡ଼ାଇଡ଼ କରି ଦେଇ ନ ଥିବାରୁ ସମାଜରେ ବହୁ ସମସ୍ୟା ଦେଖା ଦେଇଛି । ଟି.ଭି. ଦେଖୁଥିବା ପିଲାଠାରେ ଇଲେକ୍‌ଟ୍ରିକ ପୂର୍ବ ଯୁଗର ଦୃଷ୍ଟିକୋଣ କ ମୂଲ୍ୟ ବିଚାର ନ ରହିବା ସ୍ୱାଭାବିକ । କିନ୍ତୁ ହୁଏତ ସେହି ଦୃଷ୍ଟିକୋଣ ତା'ର ବାପାମାଙ୍କଠି ଅଛି । ତେଣୁ ସମାଜରେ ନାନା ଜଟିଳତା ଦେଖା ଦେଇଛି । ବର୍ତ୍ତମାନ ଇଲେକ୍‌ଟ୍ରିକ୍ ଟେକନୋଲଜି ହିଁ ଆମ ସମାଜରେ ମୁଖ୍ୟ ମାଧ୍ୟମ । ଏହି ମାଧ୍ୟମ ଯୋଗୁ ବିଚାର, କାର୍ଯ୍ୟ, ପରିବାର, ପରିପାର୍ଶ୍ୱ, ଶ୍ରୁତିକଳା, ଶିକ୍ଷା, ରାଜନୀତି— ସବୁ କଥା ପରିବର୍ତ୍ତିତ ହେବାରେ ଲାଗିଛି । ବର୍ଣ୍ଣମାଳା ଗୋଟିଏ ଟେକ୍‌ନୋଲଜି । ଏହି ଟେକନୋଲଜି ଉଦ୍ଭାବନ ପରେ ସମାଜର ଆମୂଳଚୂଳ ପରିବର୍ତ୍ତନ ହୋଇଥିଲା । ଶବ୍ଦ ଶବ୍ଦାର୍ଥ ଶିଖି ଶିଖି ଶିଶୁ ଗୋଟିଏ ଦୃଷ୍ଟିକୋଣ ମଧ୍ୟ ଗ୍ରହଣ କରି ନେଇଥିଲା, ଯେଉଁ ଦୃଷ୍ଟିକୋଣର ଦର୍ଶନକୁ ପ୍ଲେଟୋ ତାଙ୍କର ଡାଏଲଗସ୍‌ରେ ସୁନ୍ଦର ଭାବେ ପ୍ରକାଶ କରିଛନ୍ତି । ଏହାପରେ ମୁଦ୍ରଣ ଯନ୍ତ୍ରର ଟେକ୍‌ନୋଲଜି ଆସିଲା, ଜ୍ଞାନ ଆହରଣରେ ବିଭାଜନ ପ୍ରକ୍ରିୟା ଦେଖାଦେଲା । ମଣିଷର ଜାତିସତ୍ତା ଭାବ ତା' ସହିତ ଆସିଲା, ବିଶେଷଜ୍ଞମାନେ ଆସିଲେ, ବିଚାର ସହି ନ୍ୟାୟଶାସ୍ତ୍ର ଓ ଯୌକ୍ତିକତା ଉପରେ ଜୋର୍ ଦିଆଗଲା । କିନ୍ତୁ ତା'ପରେ ଇଲେକ୍‌ଟ୍ରିସିଟିର ଆବିଷ୍କାର ହେଲା । ତାହାର ଫଳ ହେଲା ରେଡ଼ିଓ ଓ ଟି.ଭି. । ଏହି ଦୁଇଟିର ଉଦ୍ଭାବନ ପରେ ସେ ବିଶ୍ୱରେ ପୁଣି ବିପୁଳ ପରିବର୍ତ୍ତନ ସଂଘଟିତ ହେବାକୁ ଯାଉଛି । ଆମେ ବହୁ ଦୃଷ୍ଟିରୁ ବର୍ଣ୍ଣମାଳାର ପୂର୍ବଯୁଗକୁ ଫେରି ଯାଉଛେ ଯେପରି । ଟି.ଭି. ମାଧ୍ୟମରେ ଆମେରିକା ନିଗ୍ରୋମାନଙ୍କର ସ୍ୱାଧୀନତା ଯାତ୍ରା, ଅନ୍ୟ କୌଣସି ଦେଶର ବିପ୍ଳବ, ଭିଏଟ୍‌ନାମର ଯୁଦ୍ଧ, କେନେଡ଼ିଙ୍କ ମୃତ୍ୟୁର ଶୋକ ଶୋଭାଯାତ୍ରା, ସବୁଥିରେ ଅଂଶ ଗ୍ରହଣ କରି ପାରୁଛେ । ଦେଶର କି ସମୟର ଦୂରତା ଆଉ ନାହିଁ । ମାକଲୁହାନ୍‌ଙ୍କ ଭାଷାରେ **The new electronic interdependence recreates the world in the image of a global village** । ସମାଜର ଏହି ତୃତୀୟ ଅବସ୍ଥାର ପୂର୍ଣ୍ଣ ବିକାଶ ବର୍ତ୍ତମାନ ସୁଦ୍ଧା ହୋଇନାହିଁ । ଇଲେକ୍‌ଟ୍ରିସିଟିର ବ୍ୟାପକତା ନେଇ ଏହି ଅବସ୍ଥାର ଲକ୍ଷଣ ଧୀରେ ଧୀରେ ପ୍ରକାଶ ପାଇବ । ଏହି ଅବସ୍ଥାର ପୂର୍ଣ୍ଣ ବିକାଶ ପରେ ଗୋଷ୍ଠି ଗୋଷ୍ଠି, ସମାଜ ସମାଜରେ ଭେଦ ରହିବ ନାହିଁ, ପ୍ରତ୍ୟେକ ଲୋକ ଅନ୍ୟ ଲୋକର କଥାରେ, ପ୍ରତ୍ୟେକ ସମାଜ ଅନ୍ୟ ସମାଜ କଥାରେ ଜଡ଼ିତ ହେବାକୁ ବାଧ୍ୟ ହେବେ । ଚେତନାର ବ୍ୟାପ୍ତି, ସହାନୁଭୂତି ଓ ଗଭୀରତା ମାନବିକ ଅନୁଭୂତିର ସାଧାରଣ ଲକ୍ଷଣ ରୂପେ ଗୃହୀତ ହେବ । ବହୁ ଭାଷାର ପ୍ରୟୋଜନୀୟତା ଭବିଷ୍ୟତରେ ରହିବ ନାହିଁ ବୋଲି କମ୍ପ୍ୟୁଟର ସୂଚନା ଦେଉଛି । ଶେଷରେ ଫରାସୀ ଦାର୍ଶନିକ ବର୍ଗସଁ କଳ୍ପନା କରିଥିବା ପରି ବିଶ୍ୱରେ ଏକ ସାଧାରଣ ସାର୍ବିକ ଚେତନା ସୃଷ୍ଟି ହେବ ଯାହାକୁ ସମଷ୍ଟି ଅଚେତନ ବୋଲି ମଧ୍ୟ କୁହାଯାଇ ପାରିବ ।

ଟେକ୍ନୋଲଜି ମାଧ୍ୟମକୁ ମାକ୍ଲୁହାନ୍ 'ହଟ୍' ବା 'ଉଷ୍ମ' ଓ 'କୁଲ୍' ବା 'ଶୀତଳ'—ଏହି ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଯେଉଁ ମାଧ୍ୟମରେ ଲୋକଙ୍କର ଯେତେ ବେଶୀ ଇନ୍ଦ୍ରିୟ ଜଡ଼ିତ ହୁଅନ୍ତି ତାହା ସେତେ ବେଶୀ ଶୀତଳ ମାଧ୍ୟମ, ଯେଉଁଥିରେ ଅପେକ୍ଷାକୃତ କମ୍ ଇନ୍ଦ୍ରିୟ ଜଡ଼ିତ ତାହା ସେତେ ବେଶୀ ଉଷ୍ମ ମାଧ୍ୟମ । ସଭ୍ୟତାର ବିକାଶ ସହ ମାନବ ଧୀରେ ଧୀରେ ଉଷ୍ମ ମାଧ୍ୟମରୁ ଶୀତଳ ମାଧ୍ୟମକୁ ଅଗ୍ରସର କରୁଛି । ପାଶ୍ଚାତ୍ୟ ଦେଶମାନଙ୍କ ସଭ୍ୟତାର ଇତିହାସ ଉଷ୍ମ ମାଧ୍ୟମର ଇତିହାସ । ବର୍ଣ୍ଣମାଳା, ମୁଦ୍ରଣ ପ୍ରକ୍ରିୟା, ପୁସ୍ତକ, ପ୍ରଭୃତି ଏହି ମାଧ୍ୟମର କଥା । କିନ୍ତୁ ରେଡ଼ିଓ ଓ ଟି.ଭି. ଶୀତଳ ମାଧ୍ୟମ । ଏଥିରେ ମଣିଷର ବହୁ ଇନ୍ଦ୍ରିୟ ଜଡ଼ିତ ହୁଅନ୍ତି, କେବଳ ଶ୍ରବଣେନ୍ଦ୍ରିୟ ନୁହେଁ କି କେବଳ ଦର୍ଶନେନ୍ଦ୍ରିୟ ନୁହେଁ । ଶୀତଳ ମାଧ୍ୟମରେ ବିଷୟ ବସ୍ତୁ ଓ ଆକାରର ପୃଥକୀକରଣ ଅନାବଶ୍ୟକ । ଉଦାହରଣ ସ୍ୱରୂପ ପୁସ୍ତକରେ ଫର୍ମ (ଆକାର) ଓ କଣ୍ଟେଣ୍ଟସ୍ (ବିଷୟବସ୍ତୁ)ର ପୃଥକୀକରଣ କରାଯାଇ ପାରେ, ସେଥିପାଇଁ ପୁସ୍ତକର ନୁହେଁ, ସେଥିରେ କଣ ଲେଖା ଯାଇଛି ତାହା ହିଁ ମହତ୍ତ୍ୱପୂର୍ଣ୍ଣ ବୋଲି ଲୋକେ କୁହନ୍ତି । କିନ୍ତୁ ଟି.ଭି.ରେ ସେହି ପ୍ରଶ୍ନ ନିରର୍ଥକ ।ସଙ୍ଗୀତ କି ଘର କି ପୋଷାକ ନେଇ ଫର୍ମ କଣ୍ଟେଣ୍ଟ୍ ପୃଥକୀକରଣ ଯେପରି ଅର୍ଥଶୂନ୍ୟ ସେହିପରି ଇଲେକ୍ଟ୍ରିକ୍ ଟେକ୍ନୋଲଜିର ବହୁ କଥା ନେଇ ସେହି ପ୍ରଶ୍ନ ନିରର୍ଥକ । ଇଲେକ୍ଟ୍ରିସିଟିର ଆବିଷ୍କାର ପରେ ମଣିଷର ଦେଖିବାର ଢଙ୍ଗ ଧୀରେ ଧୀରେ ବଦଳୁଛି । ଟେକ୍ନୋଲଜି ଯୋଗୁ ମଣିଷ ଉପରେ କିପରି ପ୍ରଭାବ ପଡ଼ୁଛି ତାହାର ବହୁ ଦୃଷ୍ଟାନ୍ତ ମାକ୍ଲୁହାନ୍ ଦେଇଛନ୍ତି । ଟାଇପ୍ ରାଇଟର ବାହାରିବା ପରେ ଇଂରାଜୀ ଭାଷା ଓ ସାହିତ୍ୟ ଉପରେ ତା'ର ପ୍ରଭାବରୁ ଗଦ୍ୟ କବିତାର ସୃଷ୍ଟି । ସେହିପରି ଟେଲିଫୋନ୍ ଯୋଗୁ ପାରମ୍ପରିକ ବେଶ୍ୟା ପ୍ରଥା ଉଠି ଯାଇ, ସମାଜକୁ କଲ୍‌ଗାର୍ଲମାନେ ଆସିଛନ୍ତି । ଆଉ ବେଶ୍ୟା ସାହିର, ବେଶ୍ୟାମାନଙ୍କ ତଦାରଖ କରିବାପାଇଁ ବୁଢ଼ୀ ବେଶ୍ୟାମାନଙ୍କର କି ବେଶ୍ୟା ଡାକି ଆଣିବା ପାଇଁ ମଧ୍ୟସ୍ଥ ଲୋକର ପ୍ରୟୋଜନ ନାହିଁ । ଟେଲିଫୋନ୍ ଉଠାଇ ନମ୍ବର ଘୂରାଇଲେ ବେଶ୍ୟା ମିଳିବା ବର୍ତ୍ତମାନ ସମ୍ଭବ । ସେହିପରି ଫଟୋଗ୍ରାଫି ବାହାରିବା ପରେ ପେଣ୍ଟିଂ ଓ ସାହିତ୍ୟରେ ପରିବର୍ତ୍ତନ ଦେଖା ଦେଇଛି । କେବଳ ବସ୍ତୁ ଚିତ୍ରଣ ବଦଳରେ ଗଭୀରତାକୁ ଯିବାପାଇଁ ପେଣ୍ଟିଂରେ ଏକ୍‌ସପ୍ରେସନିଜମ୍ ଓ ସାହିତ୍ୟରେ ସାଇକୋଆନାଲିସିସ୍ ଦେଖାଦେଇଛି । ଟେକ୍ନୋଲଜି ଉଦ୍ଭାବନରେ ମଣିଷର କିପରି ପରିବର୍ତ୍ତନ ସଂଘଟିତ ହୁଏ ତାକୁ ନାଟକୀୟ ଢଙ୍ଗରେ ମାକ୍ଲୁହାନ୍ କହିବାକୁ ଯାଇ ଲେଖିଛନ୍ତି—"ତୁମେ କିଏ ?" । ଏ ପ୍ରଶ୍ନର ଉତ୍ତର ହେବ—"ମୁଁ—ମୁଁ କିଏ ମୁଁ ବୋଧେ ଜାଣିନି । ସକାଳେ ଉଠିଲା ବେଳେ ମୁଁ କିଏ ମୁଁ ଜାଣିଥିଲି, କିନ୍ତୁ ଏ ଭିତରେ ମୁଁ ବହୁବାର ବଦଳି ଯାଇଛି ବୋଲି ମୋର ମନେ ହେଉଛି ।" ସେହିପରି ଅଜିର ମଣିଷର ପଡ଼ୋଶୀ କେହି

ନାହାନ୍ତି, ସାରା ବିଶ୍ୱ ତା'ର ପଡ଼ୋଶୀ । ଆଜିକାଲି ମଣିଷର ଶୈଶବ ଅବସ୍ଥା ହୋଇ କିଛି ନାହିଁ; ଟି.ଭି., ରେଡ଼ିଓ, ସିନେମା ଯୋଗୁ ପ୍ରତ୍ୟେକ ଲୋକ ପୂର୍ଣ୍ଣ ବୟସ୍କ ମଣିଷ । ଏହି ସବୁ କାରଣ ପାଇଁ ମାଇକେଲ୍ ଫାରାଡ଼େଙ୍କ ଇଲେକ୍‌ଟ୍ରିକ୍ ସିଟି ଆବିଷ୍କାରକୁ ଯୁଗାନ୍ତକାରୀ ଆବିଷ୍କାର ରୂପେ ଗ୍ରହଣ କରାଯିବ ।

କାନାଡ଼ାରେ ଥିବାବେଳେ ନିଜ ଗବେଷଣାରେ ବ୍ୟସ୍ତ ରହି ମାକ୍‌ଲୁହାନ୍‌ଙ୍କ ଶିଷ୍ୟ ମୁଁ ହୋଇ ପାରି ନ ଥିଲି । ତାଙ୍କର ବହୁକଥା ପଛରେ ବଳିଷ୍ଠ ଯୁକ୍ତି ଥିବା ପରି ମଧ୍ୟ ମୋର ମନେ ହେଉ ନଥିଲା । ବେଳେ ବେଳେ ସେ ନିଜ କଳ୍ପନାରେ, ଚିନ୍ତନରେ, ପ୍ରତୀକରେ ହଜିଯାଇ ଯୁକ୍ତିଯୁକ୍ତତା ହରାଇଛନ୍ତି ବୋଲି ମୋର ଧାରଣା । ତଥାପି ତାଙ୍କର ଲେଖା ପଢ଼ିଲେ ଆଧୁନିକ ସଭ୍ୟତାର ନୂତନ ଦିଗ୍‌ଦର୍ଶନ ମିଳେ ବୋଲି କୁହାଯାଇ ପାରିବ । ଟି.ଭି. ଯୁଗର ସେ ବୋଧେ ସବୁଠୁ ବଡ଼ ରହସ୍ୟବାଦୀ ଦାର୍ଶନିକ ।



# ଘର ବାହୁଡ଼ା

ଝିଅକୁ ଛାଡ଼ି ଆସିଥିଲୁ ନନା ବୋଉଙ୍କ ପାଖରେ, ତାକୁ ସେତେବେଳେ ନଅ ମାସ ହୋଇଥିଲା । ଏୟାର୍ ପୋର୍ଟ ଆସିବାବେଳେ ଭଉଣୀ ଝିଅକୁ ଧରି ହୋଟେଲ୍ ପାସପୋର୍ଟରେ ଠିଆ ହୋଇଥାଏ, ଝିଅ ସୁରଶ୍ରୀ ବଡ଼ ବଡ଼ ଆଖିରେ ଆମକୁ ବଲ ବଲ କରି ଚାହିଁ ରହିଥାଏ—କ'ଣ ବୁଝିବ ନଅ ମାସର ଝିଅ ! ଝିଅକୁ ଛାଡ଼ି ଯାଉଥିବାରୁ ଶ୍ରୀମତୀଙ୍କ ହୃଦୟରେ ଯେଉଁ ଦୁଃଖ ହେଉଥିବ ସେକଥା ମୁଁ ବୁଝିଥିଲେ ମଧ୍ୟ ବୁଝିବାକୁ ଚେଷ୍ଟା କରୁ ନ ଥାଏ । କାରଣ ବୁଝିଲେ କାନାଡ଼ା ଯିବାକୁ ଆଉ ଇଚ୍ଛା ହେବ ନାହିଁ । କମନ୍‌ୱେଲଥ୍ ସ୍କଲାରସିପ୍‌ରେ ଫାମିଲି ଆଲାଉନ୍‌ସ ଯାହା ମିଳିବ ତା ଦୁଇଟି ପିଲାଙ୍କୁ ନେଇ ଚଳିବା ପାଇଁ ପର୍ଯ୍ୟାପ୍ତ ନ ହୋଇ ପାରେ ବୋଲି ଅନେକ ବନ୍ଧୁ କହିଲାରୁ ମୁଁ ଝିଅକୁ ନେଉ ନ ଥାଏ । ସେହି ଝିଅର ସ୍ମୃତିରେ ପାଗଳି ହୋଇ କାନାଡ଼ାରେ ପହଞ୍ଚିବାଠୁ ଶ୍ରୀମତୀଙ୍କ ଓଜନ କମିବାକୁ ଲାଗିଲା ଯେ କାନାଡ଼ାର ସବୁ ଫଳ, ଦୁଧ, କୁକୁଡ଼ାମାଂସ ଓ ପୁଷ୍ଟିକର ଖାଦ୍ୟ ସତ୍ତ୍ୱେ ତାଙ୍କର ପୂର୍ବ ଓଜନ କାନାଡ଼ାରେ ଥିବାଯାକେ ଫେରି ଆସିଲାନି । ଥରେ ଚିନ୍ତିତ ହୋଇ ମୁଁ ତାଙ୍କୁ ଡାକ୍ତର ପାଖକୁ ନେଇଥିଲି । ମୋଠୁ ସବୁ ଶୁଣି ସାରି, ଝିଅକୁ ଦେଖିବା ପରେ ହିଁ ଶ୍ରୀମତୀଙ୍କର ପୂର୍ବ ସ୍ୱାସ୍ଥ୍ୟ ଫେରି ଆସିବବୋଲି ଡାକ୍ତର କହିଲେ, ଯାହା ସେତେବେଳେ କାହିଁକି, ଅନିର୍ଦ୍ଦିଷ୍ଟକାଳ ପାଇଁ ମଧ୍ୟ ସମ୍ଭବ ନ ଥିଲା । ସେହି ଝିଅର ଫଟୋ ଆମେ ଦେଖୁଥାଉ, ନନା ବୋଉ ନିୟମିତ ଆମ ପାଖକୁ ତା'ର ଫଟୋ ପଠାଉଥାନ୍ତି । ଆମର ଫଟୋ ମଧ୍ୟ ନିୟମିତ କଟକ ଯାଉଥାଏ । କିନ୍ତୁ ଆମମାନଙ୍କର ଫଟୋ ସୁରଶ୍ରୀ ପାଇଁ ଘରେ ଟଙ୍ଗା ହୋଇଥିବା [illegible]ଖ୍ୟ ଫଟୋରୁ ଆଉ କେତୋଟି ପରି ମନେ ହେଉଥିବା[illegible]ବେଳେ, ତା'ର ଫଟୋ ଆମମାନଙ୍କ ପାଇଁ ତା'ର ହସ, କାନ୍ଦ, ଶରୀରର ଗନ୍ଧ, [illegible] ନୂଆ ଶିଖୁଥିବା କଥା କୁହା, ଅର୍ଥାତ—ସବୁର ବାର୍ତ୍ତା ବୋହି ଆଣୁଥାଏ । [illegible] ଲେକ ପରି ମୁଁ କପରି ଜଲ୍‌ଦି ରସର୍ଚ୍ଚ ସାରି ଶାପରୁ ମୁକ୍ତି ପାଇବି, ସେହି ଚିନ୍ତା [illegible] ଦିନ ପଡ଼ୁଥାଏ । କାନାଡ଼ାର ସକଳ ସୁଖସ୍ୱାଚ୍ଛନ୍ଦ୍ୟ [illegible] ବି ଆମେ ଜଲ୍‌ଦି [illegible] ଫେରି ଯିବାକୁ ଇଚ୍ଛା କରୁଥାଉ, ତନ ସଠ ଭରତ [illegible] ହେଉଥା[illegible] ।

ଶେଷରେ ସେହି ଦିନ ଆସିଲା । ସେ ଦିନଟି ଓ ତା' ପୂର୍ବରୁ କେତୋଟି ଦିନ ମୋ ପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଯେଉଁଦିନ ଥିଏସି ହେବା କଥା, ତହିଁର ଦିନକ ପରେ ଟରଣ୍ଟୋ ଛାଡ଼ିବା ପାଇଁ ମୁଁ ସବୁ ବ୍ୟବସ୍ଥା କରି ସାରିଥାଏ । ଟେବୁଲ, ଚଉକି, ଡିଭାନ୍, ଡାଇନିଂ ଟେବୁଲ, କଣ୍ଟିନେଣ୍ଟାଲ ବେଡ଼୍, ଟି.ଭି., ସବୁ ବିକ୍ରୀ କରି ସାରିଥାଏ । ଆମେ ସେହି କେତେଦିନ ତଳେ ଶୋଉଥାଉ, ଖାଉଥାଉ, ବସୁଥାଉ । ଜାହାଜରେ ଯିବାପାଇଁ ଜିନିଷପତ୍ର ସବୁ ପ୍ୟାକିଂ ସରିଥାଏ । ଥିଏସି ନ ସରୁଣୁ ମୁଁ ଯିବାର ପୂର୍ଣ୍ଣ ପ୍ରସ୍ତୁତ କରୁଥିବା ଦେଖି ଅନେକ ବନ୍ଧୁ ଓ ଅଧ୍ୟାପକ ଆଶ୍ଚର୍ଯ୍ୟ ହେଉଥାଆନ୍ତି, କାରଣ ଥିଏସି ପରି ଅନିଶ୍ଚିତ କଥାରେ ସଫଳତା ହିଁ ନିଶ୍ଚୟ ମିଳିବ, ତା' ଭାବିବାଇ ବୋକାମୀ । ବେଳେ ବେଳେ ଥିଏସିରେ ଅନେକଙ୍କ ଥେସିସ୍ ରିଜେକ୍ଟ ହୋଇ ଯାଇଛି ବା ଥେସିସ୍‌ର, କୌଣସି କୌଣସି ଅଂଶକୁ ପରିବର୍ତ୍ତନ କରି ଲେଖିବାକୁ କୁହାଯାଇଛି, ଯେପରି ପରିବର୍ତ୍ତନ କରି ପୁଣି ଦାଖଲ କରିବାକୁ ନିର୍ଦ୍ଦେଶ ଆସିଲେ, କାନାଡ଼ାରେ ଆଉ ଛଅ ମାସ ପ୍ରାୟ ରହିବାକୁ ପଡ଼େ । ତେଣୁ ପିଏଚ୍. ଡ଼ି. ର ଥିଏସି ପରୀକ୍ଷାରେ ବସୁଥିବା ଛାତ୍ରମାନେ ହାତରେ ଛଅ ମାସ ସମୟ ରଖି ନିଜ ଦେଶକୁ ଫେରିବା ବ୍ୟବସ୍ଥା କରିଥାନ୍ତି । ତେଣୁ ଥିଏସି ପରେ ପରେ ମୋର ଯିବାର ପ୍ରସ୍ତୁତକୁ ଅନେକ ମୋର ନିର୍ବୋଧ ବୋକାମୀ ବୋଲି ଭାବୁଥାନ୍ତି । ମୁଁ କିନ୍ତୁ ତାଙ୍କ ରୁମ୍‌ର କାନ୍ଥରେ ଶ୍ରୀମାଙ୍କର ଫଟୋଟିକୁ ଦୃଢ଼ ଧ୍ରୁବ ଭାବରେ ଜାଣି ଦେଇଥିଲି ଯେ ମୋର କିଛି ଅସୁବିଧା ହେବାକୁ ଯାଉନି, ମୁଁ ପୁରୁଷ୍କାରରେ ଥିଏସିରେ ଉତ୍ତୀର୍ଣ୍ଣ ହେଉଛି ଓ ଭାରତ ଫେରୁଛି । ଦକ୍ଷୀଠାରେ ଶ୍ରୀ ଦେବେନ୍ଦ୍ର ଶତପଥୀ ଶିଖାଇଥିବା ଏକାଗ୍ରତା, ଏକଲକ୍ଷ୍ୟତା ଓ ସମର୍ପଣ ଭାବକୁ ମୁଁ ପ୍ରାୟ ଚାରିବର୍ଷ ଅଭ୍ୟାସ କରି ନିଃଶଙ୍କ ଓ ନିଡ଼ର ହୋଇ-ସାରି ଥାଏ ଯେପରି । ଆଉ ସତରେ ସେୟା ହିଁ ହେଲା ।

୧୯୬୭ର ଏପ୍ରିଲ ମାସ ଚଉଦ ତାରିଖ । ମୁଁ ନିତ୍ୟକର୍ମ ସାରି ଶ୍ରୀମାଙ୍କ ଫଟୋକୁ ଦର୍ଶନ କଲି ଓ ମୋର ଆଗ୍ରହ ଦେବତା ନାଧସ୍ୱଙ୍କୁ ପୂରଣ କଲି । ଅଉ କିଛିସମୟ ପରେ ଚାରିବର୍ଷ ଆଠ ମାସର ତପସ୍ୟାର ଫଳ ମିଳିବାକୁ ଯାଉଥାଏ । ମୁଁ ଘରୁ ବାହାରି ପଡ଼ିଲି । ଘୂରିଆଡ଼େ କୁହୁଡ଼ି ପଡ଼ୁଥାଏ । ଅଦ୍ଭୁତ କୋମଳ କମ୍ବଳଟାଏ ଟରଣ୍ଟୋ ସହର ଉପରେ କିଏ ଘୋଡ଼ାଇ ଦେଇଥାଏ ଯେପରି । ଇଉନିଭର୍ସିଟି ପାଖ ପାର୍କରେ ମୁଁ ଜଲ୍‌ଦି ଜଲ୍‌ଦି ଚାଲିଯାଉଥିବା ବେଳେ କୁହୁଡ଼ି ଭିତରୁ ହଠାତ୍ ଜଣେ କେହି ଭଦ୍ରବ୍ୟକ୍ତି ବାହାରି ପଡ଼ି, ବାଟ ଓଗାଳି, ମୋତେ କିଛି ପଇସା ସାହାଯ୍ୟ ମାଗିଲେ । ମୁଁ ଧପ୍ କରି ଠିଆ ହୋଇ ପଡ଼ିଲି । ଟରଣ୍ଟୋରେ ଏପରି ଅନୁଭୂତ ମୋର କେବେ ହୋଇ ନ ଥିଲା । ଅନେକ୍ଥ ଏଡ଼୍ ଦୋକାନରୁ ଫେରିବା ବେଳେ ଦୋକାନଟିଏ ପାଖରେ ଜଣେ ବୃଦ୍ଧ ଚୋଡ଼ ପାଖରେ ଭିକ୍ଷା ପାତ୍ରଟିଏ ରଖି ମାଉଥ୍ ଅରଗାନ୍ ବଜାଇ ଭିକ୍ଷା

ମାଗିବା ମୁଁ ଦେଖିଛି । ତା'ର ଭିକ୍ଷା ପାତ୍ରରେ କେହି କେହି ପଇସା ପକାଇ ଦେଇ ଥାଆନ୍ତି । ସେ ପଇସା ବୋଧେ ତା'ର ଭିକ୍ଷା ପାଇଁ ନୁହଁ, ଗୀତ ଗାଇବା ପାଇଁ ତା'ର ପାଉଣା, ମଦ୍ୟ ଦୋକାନ ଆଗରେ ମାତାଲ ଲୋକେ ବେଳେ ବେଳେ ପଇସା ମାଗିବା ମୁଁ ଦେଖିଛି । କିନ୍ତୁ ସେହି ବନ୍ଧୁମାନଙ୍କୁ କେବେ ମୁଁ ପଇସା ଦେବା ମୋର ମନେ ପଡ଼ୁନାହିଁ । କିନ୍ତୁ ସବ୍‌ୱେରୁ ଓହ୍ଲାଇ ପାର୍କ ଭିତରେ ବୁଲି ଯାଉ ଯାଉ ଯେଉଁ ଭଦ୍ରଲୋକଙ୍କୁ ମୁଁ ଦେଖିଲି ସେ ମଦ୍ୟପୀ କି ଭିକ୍ଷୁକ ପରି ମୋତେ ଦିଶୁ ନ ଥିଲେ । କୌଣସି ଦୂର ଦେଶରୁ, ହୁଏତ ପଣ୍ଡିଚେରୀରୁ, ହୁଏତ ମୋ ନନା ବୋଉଙ୍କ ପାଖରୁ, ସେ ଆଶୀର୍ବାଦ ହୋଇ ମୋ ପାଖକୁ ଆସିଥିବା ପରି ମୋତେ ଲାଗିଲେ । ମୁଁ ଅକୁଣ୍ଠିତ ଚିତ୍ତରେ ତାଙ୍କୁ କିଛି ପଇସା ଦେଇଦେଲି । ସେ ପଇସାତକ ନେଇ କୁହୁଡ଼ି ଭିତରେ ଭିଲିନ୍ ହୋଇଗଲେ । ତାଙ୍କୁ ପଇସା ଦେବା ପରେ ପରେ ବିଶ୍ୱ ସହିତ କିପରି ଏକ ମୈତ୍ରୀ ସମ୍ବନ୍ଧ ମୁଁ ସ୍ଥାପନ କରି ଦେଇଥିଲି ଯେପରି ! ନିର୍ମଳ ଚିତ୍ତରେ ସ୍କୁଲ ଅଫ୍ ଗ୍ରାଜୁଏଟ୍ ଷ୍ଟଡ଼ିଜ୍‌ର ୨୦୭ ରୁମ୍ ଭିତରକୁ ମୁଁ ପଶିଲି । ସେତେବେଳକୁ ସକାଳ ଦଶଟା ହୋଇ ସାରିଥାଏ ।

ଯେତେବେଳେ ମୁଁ ସେହି ରୁମ୍‌ରୁ ପ୍ରାୟ ଦେଢ଼ ଘଣ୍ଟା ପରେ ବାହାରିଲି, ମୁଁ ଜାଣିଲି ଭାଇଭାରେ ମୁଁ ଖୁବ୍ ଭଲ କରିଛି, ମୋର ଉତ୍ତରରେ ସମସ୍ତେ ଖୁସି ହୋଇ ଯାଇଛନ୍ତି, ମୁଁ ଜଣେ ଭଲ ରିସର୍ଚ୍ଚର୍‌ର ଦକ୍ଷତା ରଖୁଥିବା ସହ ଜଣେ ଭଲ ଶିକ୍ଷକ ହୋଇ ପାରିବି ବୋଲି ମଧ୍ୟ ସେମାନଙ୍କୁ ପ୍ରମାଣ ଦେଇ ସାରିଛି । ରୁମ୍ ଭିତରୁ ବାହାରି ଆସିବାବେଳକୁ ମୁଁ ଖୁବ୍ ହାଲୁକା ମନେ କରୁଥାଏ । ମୁଁ ବାହାରକୁ ଆସିବାର କିଛି ସମୟ ପରେ ମୋର ଗାଇଡ୍ ପ୍ରଫେସର୍ ହଣ୍ଟର ଆସି ମୋର କରମର୍ଦ୍ଦନ କରି ଶୁଭ ଖବର ଜଣାଇ ଦେଇଗଲେ । ସେ ଇଣ୍ଟର୍‌ଭ୍ୟୁ ରୁମ୍ ଭିତରକୁ ଚାଲିଯିବା ପରେ, ମୁଁ ନିଃଶ୍ୱାସଟିଏ ଛାଡ଼ି ଭାରତକୁ କିପରି ଫେରିବି, କ'ଣ କ'ଣ କରିବାକୁ ହେବ, ଆଉ କ'ଣ କ'ଣ କିଣିବାକୁ ବାକି ରହିଲା, ସେହି ବିଷୟରେ ମୁଁ ଭାବିବାକୁ ଆରମ୍ଭ କଲି । କାନାଡ଼ାରେ ଆଉ ଦଣ୍ଡେ ରହିବାକୁ ଇଚ୍ଛା ହେଉ ନ ଥାଏ । କିନ୍ତୁ ଗୁଡ଼ାଏ କାମ ବାକି ଥାଏ କରିବାକୁ ।

ସେଦିନ ସନ୍ଧ୍ୟାରେ ରସେଲ୍ ପରିବାରଙ୍କ ନିମନ୍ତ୍ରଣ କ୍ରମେ ପ୍ରସିଦ୍ଧ ଓକିଫ୍ ଥିଏଟର୍‌କୁ ଆମେ ଗଲୁ 'ରୋମିଓ ଜୁଲିଏଟ୍' ବ୍ୟାଲେ ଦେଖିବାକୁ । ରୋମିଓ ଜୁଲିଏଟ୍‌ର ସେହି ପୁରୁଣା ବିଷୟ । କିନ୍ତୁ ବ୍ୟାଲେରେ ତାହା ଅଭିନବ ରୂପ ଗ୍ରହଣ କରିଥାଏ । ଟରେଣ୍ଟୋର ବିଖ୍ୟାତ ବ୍ୟାଲେ ଗ୍ରୁପ୍‌ର ଅଭିନୟ ଆଗରୁ ମୁଁ କେବେ ଦେଖି ନ ଥିଲି । ଜଣେ ପ୍ରସିଦ୍ଧ ବ୍ୟାଲେରିନାଙ୍କୁ ଅର୍ଥନୀତି ଅଧ୍ୟାପକ ଲର୍ଡ କେନସ୍ ବିବାହ କରିଥିଲେ ବୋଲି ବନ୍ଧୁ ସୁରେନ୍ଦ୍ର ମିଶ୍ରଙ୍କଠୁ କଟକରେ ମୁଁ ବହୁବାର ଶୁଣିଥିଲି । ଏପରି କେତୋଟି ଘଟଣା

ଜାଣିବା ପରେ ବୃଦ୍ଧିଜୀବୀମାନେ ସୁନ୍ଦରୀ ସ୍ତ୍ରୀମାନଙ୍କୁ ବିବାହ କରିବାର ଅଧିକାର ନେଇ ଆମ ବୁଦ୍ଧିଙ୍କର ଉପରେ କେଜାଣି ଧାରଣା ହୋଇ ଯାଇଥିଲି । ଟରଣ୍ଟୋରେ ଓଲ୍ଡଫ ସବୁଠୁ ଆକର୍ଷଣୀୟ ଥିଏଟର୍ ଟିଏ । ଟିଏଟିର ନିର୍ମାଣଗତ ସୌନ୍ଦର୍ଯ୍ୟ ଯୋଗୁ ମୁଁ ବହୁବାର ଥିଏଟର୍ ଭିତରକୁ ଯିବାକୁ ଇଚ୍ଛା କରିଥିଲେ ମଧ୍ୟ କୌଣସି ନା କୌଣସି କାରଣରୁ ଭିତରକୁ କେବେ ଯାଇ ପାରି ନ ଥିଲି । ରହେଲ୍ ପରିବାର ମୋ ପରି ଜଣେ ସାହିତ୍ୟିକ ଓଲ୍ଡଫ୍ ସେଣ୍ଟର୍‌କୁ ଆଗରୁ କେବେ ଆସି ନଥିବା ଜାଣି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ବ୍ୟାଲେ ଦେଖୁଥିବା ବେଳେ କିନ୍ତୁ ମଝିରେ ମଝିରେ ଉପରେ ଆମେ ଉଡ଼ାଜାହାଜରେ ଯିବୁ, କେଉଁ କେଉଁ ଜାଗା ଉପରେ ଦେଖିବୁ, ଭଲ ଅଥଚ ଶସ୍ତା ହୋଟେଲ୍‌ରେ ରହି ପାରିବୁ କି ନାହିଁ, ଏହି ସବୁ ଚିନ୍ତା ଇଚ୍ଛା ନ କଲେ ବି ମଝିରେ ମଝିରେ ମନ ଭିତରକୁ ପଶି ଆସୁଥାଏ ।

ଏପ୍ରିଲ ୧୫ ଓ ୧୬ ଦୁଇଦିନ ବନ୍ଧୁମାନଙ୍କ ଘରକୁ ଯାଇ ଖାଇବା ପିଇବା ଓ ପରିବାରର ଲୋକମାନଙ୍କ ପାଇଁ ଏଣୁ ତେଣୁ କିଣିବାରେ କଟିଗଲା । ବାଲ୍ୟବନ୍ଧୁ ନରେଶ୍ୱର ଦାସ, ଉତ୍ତର ଭାରତର ଶ୍ୟାମ କୁମାର, ବଙ୍ଗଳାର ମୋତିଲାଲ, ମୋର ଗାଇଡ୍ ପ୍ରଫେସର୍ ହଣ୍ଟର୍—ଅନ୍ୟାନ୍ୟ ବନ୍ଧୁମାନେ ସେହି ଦୁଇଦିନ ଭିତରେ ଆମ ଘରକୁ ବୁଲି ଆସିଥିଲେ, ମୋତେ ପିଏଚ.ଡ଼ି. ପାଇଁ କଙ୍ଗ୍ରାଚୁଲେସନ୍ ଜଣାଇ ଓ ଆମର ଶୁଭଯାତ୍ରା କାମନା କରି । ଘରେ କିନ୍ତୁ ସେମାନଙ୍କୁ ବସାଇବା ପାଇଁ କି ଅଭ୍ୟର୍ଥନା କରିବା ପାଇଁ ଘର ଭିତରେ ଗୋଟିଏ ହେଲେ ଜିନିଷ ନଥିଲା—ସେମାନେ ତଳେ ବସୁଥିଲେ, କାନାଡ଼ା ଛାଡ଼ି ଯିବାପାଇଁ ଆମ ତରତରରେ ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ । ଆମେ ଶେଷଦିନ ଆର୍ତ୍ତତ୍ରାଣ ଦାଶଙ୍କ ଘରେ ଖାଇଲୁ । ସନ୍ଧ୍ୟା ୭.୩୦ରେ ଜୋଏନ୍ ଗାର୍ନରଙ୍କ ପିତାଙ୍କ କାର୍‌ରେ ଏରୋଡ୍ରମ୍ ବାହାରିଲୁ । ଗାର୍ନରଙ୍କ ପିତା ନିଜେ ଡ୍ରାଇଭିଂ କରୁଥାନ୍ତି । ଶ୍ରୀମତୀ ଗାର୍ନର ଓ ମିସ୍ ଗାର୍ନର୍ ସେହି କାର୍‌ରେ ଥା'ନ୍ତି । ଓଡ଼ିଶାର ପଣ୍ଡା, ବାଲ୍ୟବନ୍ଧୁ ନରେଶ୍ୱର ଦାସ ମଧ୍ୟ ସେମାନଙ୍କ କାର୍ ନେଇ ଅନ୍ୟାନ୍ୟ ବନ୍ଧୁମାନଙ୍କ ସହ ଏରୋଡ୍ରମ୍ ଆସୁଥାଆନ୍ତି । ମୋର ଟରଣ୍ଟୋ ରହଣି କାଳରେ ବହୁବାର ମୁଁ ଏୟାର୍‌ପୋର୍ଟ ଆସିଥିଲି, କେହି ଭାରତୀୟ ବନ୍ଧୁ ଭାରତକୁ ଫେରୁଥିବା ବେଳେ, ନୟୁମ କଲାପରି ମୁଁ ଏୟାର୍‌ପୋର୍ଟ ଆସେ । ଟରଣ୍ଟୋରୁ ଭାରତକୁ ଫେରିବା ପାଇଁ ସେହି ଏୟାର୍‌ପୋର୍ଟ ଏକମାତ୍ର ପ୍ରତୀକ ହୋଇ ମୋ ପାଇଁ ଯେପରି ରହିଯାଇଥିଲା । ସେହି ବାଟ ଦେଇ ଦିନେ ମୁଁ ମୋର ଜନ୍ମଭୂମିକୁ ପ୍ରତ୍ୟାବର୍ତ୍ତନ କରିବି ସେହି ବିଶ୍ୱାସରେ ମୁଁ ବଞ୍ଚିଥିଲି ଯେପରି । ଦର୍ଶକମାନଙ୍କ ଲାଉଞ୍ଜରେ ବସି ବସି ଉଡ଼ାଜାହାଜ ଅଦୃଶ୍ୟ ହେବାଯାଏଁ ମୁଁ ଆକାଶକୁ ଚାହିଁ ରହେ ଓ ଆଖିରେ ପାଣି ଜକେଇ ଆସିବା ପରେ ରୁମାଲ୍‌ରେ ତାହା ପୋଛି ତଳକୁ ଆସେ ଫେରିବା ପାଇଁ । ମୁଁ ଫେରିବା ଦିନ କାହା ଆଖି ସେପରି ଜକେଇ ଥିବ କେଜାଣି !

ରାତ ୮.୩୦ରେ ପ୍ଲେନ୍ ଛାଡ଼ିଲା । ଜ଼ି ସି. ଜେଟ୍ । ଖୁବ୍ ପବିତ୍ର ହେଉଥାଏ ଏରୋଡ୍ରମ୍‌ରେ ସେଦିନ । ଉଡ଼ାଜାହାଜରେ ବସୁ ବସୁ ମନର କେଉଁ କୋଣରେ ବଟିଙ୍କର ଅନନ୍ୟ ଅଂଶର କଣ୍ଠା ବୃଦ୍ଧଟିଏ ପରି ଉପସ୍ଥିତିଏକୁ ମୁଁ ଦେଖି ମାଗିଲି କିନ୍ତୁ ସଙ୍ଗେ ସଙ୍ଗେ ବନ୍ଧୁଙ୍କର 'ବାୟୁବାହନ' ନାମ ମୋର ମନେପଡ଼ିଲା । ମୁଁ 'ଓଁ ନମୋ ନାହେୟଦୋୟ' କହିଲି । ମୋର ବନ୍ଧୁମାନେ ଦର୍ଶକମାନଙ୍କ ଲଉଞ୍ଜରେ ସେତେବେଳେ ଠିଆ ହୋଇ ଆମମାନଙ୍କ ପାଇଁ ହାତ ହଲଉଥିବେ ।

ରାତ ୧୧.୨୦ରେ ଅମେ ହ୍ୟାଲିଫାକ୍‌ସରେ ପହଞ୍ଚିଲୁ । ଏୟାର୍‌ପୋର୍ଟଠୁ କୋଡ଼ିଏ ମାଇଲ ଦୂରରେ ମୋର ବାଲ୍ୟବନ୍ଧୁ ଡକ୍‌ଟର ରବି କାନୁନ୍‌ଗୋର ଘର । କାନାଡ଼ା ଛାଡ଼ିବା ପୂର୍ବରୁ ତା' ଘରେ ମୁଁ ରହିବ ବୋଲି ସେ ମୋତେ ବାରମ୍ବାର ଅନୁରୋଧ କରିଥିବା ହେତୁ ମୁଁ ହାଲିଫାକ୍‌ସରେ ଗୋଟିଏ ଦିନର ପ୍ରୋଗ୍ରାମ କରିଥିଲି । ମନସ୍ତତ୍ତ୍ୱରେ ସେ ଅଧ୍ୟାପକ ସେଠି । ସେ ଏରୋଡ୍ରମକୁ ଆସିଥିଲା । ତା' ଘରେ ପହଞ୍ଚି ଖାଇ ପିଇ ଶୋଇ ଶୋଇ ରାତି ଗୋଟାଏ । ପରଦିନ ତା' ସହ ସମସ୍ତେ ହ୍ୟାଲିଫାକ୍‌ସ ସହର ବୁଲି ବାହାରିଲୁ । ଟରଣ୍ଟୋ, ମଣ୍ଟ୍ରିଏଲ୍ ଦେଖିବା ପରେ ହ୍ୟାଲିଫାକ୍‌ସ ଆମକୁ ବିଶେଷ କିଛି ଆକର୍ଷଣ କଲାନି । କିନ୍ତୁ ରବିର ବନ୍ଧୁ ଚର୍ଚ୍ଚାରେ ଆମେ ଅଭିଭୂତ ହୋଇ ପଡ଼ିଥିଲୁ । ପହଞ୍ଚିବାର ତରିଦିନ ରାତ ୧୦ଟାରେ ଅମେ ୮୫୦ ଫ୍ଲାଇଟ୍ ନମ୍ବର ଉଡ଼ାଜାହାଜ ଧରିଲୁ । ଏଥର ସମୁଦ୍ର ଡେଇଁବୁ, କାନାଡ଼ା ଛାଡ଼ିବୁ । ଜେଟ୍‌ବିମାନ ନେଓ୍ୱେରେ କିଛି ବାଟ ଦଉଡ଼ିବା ପରେ ଠିଆ ହୋଇଗଲା, ତା'ପରେ ଅତ୍ୟନ୍ତ ଦ୍ରୁତଗତିରେ ଦଉଡ଼ି ଅକାଶକୁ ଲମ୍ଫ ପ୍ରଦାନ କଲା । ସବୁ ଜେଟ୍ ଭୂମି ଛାଡ଼ି ଉପରକୁ ଉଠିବା ପୂର୍ବରୁ ହନୁମନ୍ତ ଡିଆଁ ଦେଇ ସେହିପରି ଯାଏ । ମନ ଦୁଃଖ ହେଉଥାଏ । ପୁଣି ଜୀବନରେ କାନାଡ଼ା ଆସିବାର ଭାଗ୍ୟ ହେବ କି ନାହିଁ କେଜାଣି । କିନ୍ତୁ ମୋତେ ଲାଗୁଥାଏ ପୁଣି ମୁଁ ଆସିବି, ନିଶ୍ଚୟ ଆସିବି । କାନାଡ଼ାରେ ରହିଯିବାରେ ମୁଁ ଆଗ୍ରହୀ ନ ଥିଲି କିନ୍ତୁ ଅସି କିଛି ଦିନ ବୁଲି ଫେରିଯିବାରେ ମୋର କିଛି ଆପତ୍ତି ନ ଥିଲା । ଅକାଶକୁ ଚରି ଜେଟ୍ ଉପରକୁ ଉଠୁଥିବାବେଳେ ଫ୍ଲାଇଟ୍ ନମ୍ବର ମୁଁ ମିଶାଇ ପକାଇଲି, ୮, ୫ ମିଶି ତେର ହେଉଥିଲା । ଏହି ତେରକୁ କାନାଡ଼ା ଇଂଲଣ୍ଡର ଲୋକଙ୍କ ଭାରି ଡର । ଏଙ୍କିନର ସକଳ ଅଟ୍ଟାଳିକା ସତ୍ତ୍ୱେ ଆପାର୍ଟମେଣ୍ଟ ବିଲ୍ଡିଂରେ ସେମାନେ ୧୩ ନମ୍ବର ଫ୍ଲୋର୍‌କୁ ଚାଟନ୍ତିନି, ୧୩ ନମ୍ବର ରୁମ୍‌କୁ ରଖନ୍ତିନି, ୧୩ ତାରିଖ ଦିନ କୌଣସି ଶୁଭ କାର୍ଯ୍ୟ କେହି କରନ୍ତିନି । ୧୩ ବଦଳରେ ସେମାନେ ୧୪ ନାମ ରଖନ୍ତି । ମୋର ଇଣ୍ଟର୍‌ଭ୍ୟୁ ୧୩ ତାରିଖ ଦିନ ହେବାକୁ ଥିଲା । ପ୍ରଫେସର୍ ଗାଉକଙ୍କ ସେକ୍ରେଟେରୀ ମିସେସ୍ ଗାଇଲି ହସି ହସି ମୋତେ ଇଣ୍ଟର୍‌ଭ୍ୟୁ ୧୩ ଦିନ ରଖାଯାଇ ପାରିବନି ବୋଲି ପଚାରିଥିଲେ । ମୁଁ

ହୁସି ହୁସି ହୁଁ କରିଥିଲି । କିନ୍ତୁ ପରେ ସେ ନିଜେ ବା ପ୍ରଫେସର୍ ଗାଉନ୍‌ଙ୍କ ନିର୍ଦ୍ଦେଶକ୍ରମେ ତାହାକୁ ୧୪ ତାରିଖକୁ ଘୁଞ୍ଚାଇ ଦେଇଥିଲେ । ମୋ ପାଇଁ ୧୩ ଅଶୁଭ ନୁହେଁ ବୋଲି ମୁଁ ମିସେସ୍ ଗାଉନଙ୍କୁ କହିଥିଲି ।

ସକାଳ ୧୦.୩୦ରେ ଆମେ ଲଣ୍ଡନରେ ପହଞ୍ଚିଲୁ । କାନାଡ଼ା ଓ ଆମେରିକାର ବହୁ ପ୍ରସିଦ୍ଧ ସହର ଦେଖିବା ପରେ ଲଣ୍ଡନ ଆମକୁ ଆକର୍ଷଣୀୟ ମନେ ହେଲା ନାହିଁ । ବିମଣଃ ଆମର ଯାତ୍ରାରେ ଆମେ ଯେପରି ଅମରାବତୀରୁ ତଳକୁ ତଳକୁ ଖସି ଆସୁଥିଲୁ । ଲଣ୍ଡନ ବିଶ୍ୱବିଦ୍ୟାଳୟ ପାଖକୁ ଆସି Friends' International Centre ରେ ଆମେ ରହିଲୁ । ଏପ୍ରିଲ ମଝିରେ ବି ଲଣ୍ଡନରେ ବେଶ୍ ଶୀତ କରୁଥାଏ । ଲଣ୍ଡନରେ ସେଣ୍ଟ୍ରାଲ ହିଟେଡ଼୍ ସିଷ୍ଟେମ୍ ସବୁ ଘରେ ନ ଥାଏ । ରାତିରେ ଉଷୁମ ପାଇଁ ଆମେ ଶୋଇବା ଘରେ ହିଟର୍ ଲଗାଇ ଶୋଇଥିଲୁ । ପହଞ୍ଚିବା ଦିନ ବି.ଓ.ଏ.ସିର ଲିମୋସିନ୍‌ରେ ଆସିବାବେଳେ ଲଣ୍ଡନର ଦର୍ଶନୀୟ ଜାଗାଗୁଡ଼ିକ ପାଖରେ ଗାଇଡ଼୍ ଜାଗାଟିର ଐତିହାସିକ ମହତ୍ତ୍ୱ କଥା କହି ଆମମାନଙ୍କର ଦୃଷ୍ଟି ଆକର୍ଷଣ କରୁଥାଏ, କିନ୍ତୁ ପୂର୍ବ ଦିନ ରାତି ଅନିଦ୍ରା ଯୋଗୁଁ ମୁଁ ପ୍ରାୟ ଢୁଲଉ ଥାଏ, ଗାଇଡ଼୍‌ର କଥାଗୁଡ଼ିକ ମୋତେ ଲଲ୍‌ବାଇ ପରି ଶୁଣା ଯାଉଥାଏ । ଇଣ୍ଟରନେସନାଲ୍ ସେଣ୍ଟର୍‌ରେ ଆମ ରୁମ୍‌ଟି ସେଣ୍ଟ୍ରାଲ ହିଟେଡ଼୍ ନ ହେଲେ ବି ମୁଁ ରାତିରେ ଭଲକରି ଶୋଇଲି ଓ ତହିଁଆରଦିନ ଆଖି ମେଲାଇ ଲଣ୍ଡନକୁ ପ୍ରଥମ କରି ଯେପରି ଦେଖିଲି । ସେ ଦିନଟା ଆମେ ବୁଲି ବୁଲି ଲଣ୍ଡନ ସହର ଦେଖିଥିଲୁ । ତହିଁ ଆରଦିନ ଏପ୍ରିଲ ୨୧ ତାରିଖ, ଆମେ ଲଣ୍ଡନ ଛାଡ଼ିଲୁ ୧.୩୦ ରେ । ୨.୩୦ ରେ ଆମେ ପ୍ୟାରି ସହରରେ ପହଞ୍ଚିଗଲୁ । ଏୟାର ପୋର୍ଟଟି କିନ୍ତୁ ଭିସା ତଦାରଖରେ ସେମାନେ ଆମମାନଙ୍କୁ ୪.୩୦ ଯାଏଁ ବ୍ୟସ୍ତ ରଖିଲେ । ହଠାତ୍ ମୋତେ ଜଣା ପଡ଼ିଲା ମୁଁ ଏକ ଅନ୍ୟ ଭାଷୀ ରାଜ୍ୟରେ ପହଞ୍ଚି ଯାଇଛି ଏଥର । ଭାବ ବିନିମୟ ନ କରି ପାରିଲେ ମଣିଷ କେଡ଼େ କଷ୍ଟ ପାଏ ମୁଁ ପ୍ୟାରି ଏୟାର୍‌ପୋର୍ଟଠୁ ଆରମ୍ଭ କରି ପ୍ୟାରି ଛାଡ଼ିବା ଯାଏଁ ଅନୁଭବ କରିଥିଲି । କେବଳ ନେପୋଲିୟନ୍ ବୋନାପାର୍ଟଙ୍କ ଜୀବନୀ ପଢ଼ି ପ୍ରବଳ ଆଗ୍ରହ, ସାର୍ତ୍ତ୍ରଙ୍କ ଦର୍ଶନ ଓ ଫ୍ରେଞ୍ଚ୍ ସାହିତ୍ୟର ଯଶର କଣିକା ମୋତେ ଆକର୍ଷଣ କରୁଥିଲା ଯାହା, ନ ହେଲେ ଭାବ ବିନିମୟର ଦୁଃସାଧ୍ୟତା ହେଉ ମୁଁ ପ୍ୟାରି ନ ଦେଖି ଲଣ୍ଡନରେ ଆଉ ଦିନେ ଦୁଇଦିନ ରହିଯିବା ପସନ୍ଦ କରିଥାଆନ୍ତି । ଟ୍ୟାକ୍ସି ଡ୍ରାଇଭର୍ ଆମ ସହ ଅନବରତ ଗପି ମୋ ସ୍ତ୍ରୀଙ୍କ ସିନ୍ଦୂର ବିନ୍ଦୁ, ଶାଢ଼ୀ, ଆଖି, ସବୁର ପ୍ରଶଂସା କରୁଥିବାବେଳେ ମୁଁ ବେଶୀ ବେଶୀ ବିଦ୍ରୁପ ହୋଇ ପଡ଼ୁଥିଲି କାରଣ ତା ଭାଷା ମୁଁ ବୁଝିପାରୁ ନ ଥିଲି । ତା' ଠାରି ଠୁରି ଓ ଅଙ୍ଗଭଙ୍ଗୀରୁ ଯାହା କିଛି କିଛି ମୋତେ ବୁଝା ପଡ଼ୁଥିଲା । କିଛି ବାଟ ଗିବା ପରେ ଯେତେବେଳେ ମୁଁ

ହୋଟେଲ 'ଡରୁନ୍ନା' ନାମ କହିଲି, ସେ ତା' ପରିବର୍ତ୍ତେ ଆଉ ଗୋଟିଏ ହୋଟେଲର ନାମ ବାରମ୍ବାର ମୋତେ କହିଲା । ମୁଁ ନିଧାର୍ଯ୍ୟଭାବେ ସେ ଠକିଟିଏ ବୋଲି ଜାଣିଦେଲି । ଶେଷରେ ସେ ତାର ହୋଟେଲ ପାଖରେ ମୋତେ ପହଞ୍ଚାଇ ଦେଲା ବା । ମୁଁ ତା' ଉପରେ ଯେତେ ରାଗିଲେ ବି ମୋର କୌଣସି କଥା ବୁଝି ନ ପାରିବାର ବାହାନା କରି ମୋ'ଠୁ ପ୍ରାୟ ଜବରଦସ୍ତ ଦଶ ଫ୍ରାଙ୍କ୍ ନେଇ ସେ ଚାଲିଗଲା । ପୋଲିସ ମଧ୍ୟ ମୋତେ କିଛି ସାହାଯ୍ୟ କରି ପାରିଲେନି । କାରଣ ସେ ମଧ୍ୟ କେବଳ ଫରାସୀ ଭାଷା ହିଁ ବୁଝେ । ଶେଷରେ ଆଉ ଗୋଟିଏ ଟ୍ୟାକ୍ସି ନେଇ ମୁଁ ମୋର ନିର୍ଦ୍ଦିଷ୍ଟ ହୋଟେଲକୁ ଆସିଥିଲି ।

ଲଣ୍ଡନ ତୁଳନାରେ ପ୍ୟାରି ସୁନ୍ଦର ସହର । ତା'ର ପ୍ରଶସ୍ତ ରାସ୍ତା ପରି ରାସ୍ତା ମୁଁ ବୋଧେ ଆଉ କେଉଁଠି ଦେଖି ନ ଥିଲି । ରାସ୍ତାର ଦୁଇ ପାର୍ଶ୍ୱର ବୃକ୍ଷରାଜି, ଗୋଟିଏ ଉଚ୍ଚତାର ସମସ୍ତ କୋଠା ଓ ଅଦ୍ଭୁତ ଭାବେ ପ୍ରଶସ୍ତ ରାସ୍ତା, ମୋତେ ସକଳ ନଗରୀମାନଙ୍କର ପ୍ୟାରି ହିଁ ମଡ଼େଲ ହୋଇଥିବ ବୋଲି ସୂଚନା ଦେଲା । ନେପୋଲିୟନ୍ ତାଙ୍କର ଅସଂଖ୍ୟ ସୈନ୍ୟଙ୍କୁ ଚଲାଇବା ପାଇଁ ଏହି ସବୁ ପ୍ରଶସ୍ତ ରାସ୍ତା କରିଥିଲେ । ପ୍ୟାରି ସହର ତାଙ୍କରି ତିଆରି । ସମସ୍ତ ଫ୍ରାନ୍ସ ତାଙ୍କରି କଳ୍ପନା ପ୍ରସୂତ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବନାହିଁ । ପିଲାଦିନେ ତାଙ୍କର ବହୁତ ଜୀବନୀ ମୁଁ ପଢ଼ିଥିଲି । ପ୍ୟାରିର ଚିକ୍ ରାସ୍ତାରେ ବୁଲୁଥିବା ବେଳେ ସେହି ବଡ଼ବଡ଼ ବଡ଼ବଡ଼ କିନ୍ତୁ ସମକାୟ କୋଠା, ଉଚ୍ଚ ପତ୍ରଭରା ବୃକ୍ଷ ଓ ପ୍ରତ୍ୟେକ ରେସ୍ତୋରାଁ ଆଗରେ ଚଉକି ପକାଇ ପାନରତ, ଆଳାପରତ ଯୁବକଯୁବତୀ ମୋତେ ବାରମ୍ବାର ସେହି ମହାନ୍ ପୁରୁଷଙ୍କ କଥା ମନେ ପକାଇ ଦେଉଥାଆନ୍ତି ।

ପ୍ୟାରିକୁ ପୁଣି କେବେ ନିଶ୍ଚେ ଆସିବୁ ବୋଲି ମନସ୍ଥ କରି ସ୍ୱିସ୍ ଏୟାର୍ ଲାଇନ୍‌ରେ ଆମେ ଜୁରିଖ୍ ଆସିଲୁ । ଉଡ଼ାଜାହାଜରେ ଆସିବାବେଳେ ଡିନର୍ ଟାଇମ୍ ହୋଇଥିଲା, ଆମେ ଡିନର୍ ଖାଇଥିଲୁ । ଅଭ୍ୟାସ ଅନୁଯାୟୀ ମୁଁ ସୁନ୍ଦରୀ ଷ୍ଟିଓ୍ୱାର୍ଡ଼େସ୍‌କୁ ଆମେ ହିନ୍ଦୁ, ଗୋମାଂସ ଖାଉନାହୁଁ, ବୋଲି କହିଥିଲି । ସେ ହସି ହସି ଆମକୁ ଖାଇବାକୁ ଦେଲାବେଳେ ଗୋମାଂସ ନ ଦେଇ ଗ୍ରେଟ ବାଛୁରୀ ମାଂସ ଦେଲେ । ମୁଁ ତାଙ୍କର ବୁଦ୍ଧି ଓ ସରଳତାରେ ହସି ପକାଇଲି, ସୁନ୍ଦରୀ ସ୍ତ୍ରୀ ବିଶେଷ କରି ଷ୍ଟିଓ୍ୱାର୍ଡ଼େସ୍‌ମାନଙ୍କ ବୁଦ୍ଧି ନେଇ ମୋର ପୂର୍ବ ଧାରଣା ବଳବତ୍ତର ହୋଇଗଲା । ମୁଁ ବାଛୁରୀମାନଙ୍କୁ ଗୋଜାତୀୟ ବୋଲି କହି ଆମକୁ କୁକୁଡ଼ା ମାଂସ ଦେବାକୁ କହିଥିଲି । ଗୋରୁମାନଙ୍କ ପ୍ରତି ମୋର ଧାରଣା ତାଙ୍କୁ ମୁଗ୍ଧ କରିଥିଲା ନିଶ୍ଚୟ, କାରଣ ଜୁରିଖରେ ଓହ୍ଲାଇବା ପୂର୍ବରୁ ସେ ମୋତେ ସୁଇଜରଲଣ୍ଡରେ

ରହିଯିବା ପାଇଁ ଅନୁରୋଧ କରିଥିଲେ । କାରଣ ତାଙ୍କ ଦେଶରେ ଲୋକସଂଖ୍ୟା କମ୍, ଅନ୍ୟ ଦେଶରୁ ଲୋକେ ଆସି ରହନ୍ତୁ ବୋଲି ତାଙ୍କ ଦେଶ ଲୋକ ଖୁବ୍ ଚାହାନ୍ତି ବୋଲି ସେ ମୋତେ କହିଥିଲେ । ମୁଁ ବିବାହ କରି ନଥିଲେ ସେହି ସୁନ୍ଦରୀ ଷ୍ଟିୱାର୍ଡେସ୍‌ଙ୍କ ଅନୁରୋଧକୁ ଶିରରକୁ ନେଇ ଆଥାନ୍ତି ବୋଧେ ।

ଜୁରିଖରେ ପହଞ୍ଚିବା ବେଳକୁ ରାତି ଅଧ ହୋଇ ଯାଇଥାଏ । ରାତି ବାର ପରେ ଅନ୍ୟ ତାରିଖ । ୨୩ ତାରିଖ ରବିବାର ହୋଇଥାଏ ସେଦିନ । ହୋଟେଲ ଟର୍ମିରେ ଆମେ ଆସି ରହିଲୁ । ଖୁବ୍ ପରିଷ୍କାର ହୋଟେଲ, ଖୁବ୍ ସୁନ୍ଦର ସାଜସଜ୍ଜା ଓ ଶୋଇବା ବ୍ୟବସ୍ଥା । ହୋଟେଲ ବ୍ୟବସାୟ ଯୋଗୁଁ ସ୍ୱିଜରଲଣ୍ଡର ଅର୍ଥନୀତିକ ଅବସ୍ଥା ଖୁବ୍ ସ୍ୱଚ୍ଛଳ ବୋଲି ମୋର ମନେ ପଡ଼ିଲା । ଶେଯ ଛୁଇଁ ଛୁଇଁ ଅମ ସମସ୍ତଙ୍କୁ ନିଦ ହୋଇଗଲା । ସମସ୍ତଙ୍କ ଆଗରୁ ମୋର ନିଦ ଭାଙ୍ଗିଲା । ମୁଁ ଉଠିପଡ଼ି ଝରକା ଖୋଲି ଦେଇ ଦେଖେ ବାହାରେ ଝିପୁରୁ ଝିପୁରୁ ବର୍ଷା ହେଉଛି । ଅଦୂରରେ ପର୍ବତଶ୍ରେଣୀ, ହୋଟେଲଠୁ କିଛି ଦୂରରେ ନଈଟିଏ । କୌଣସି ପ୍ରସିଦ୍ଧ ଶିଳ୍ପୀଙ୍କ ଲ୍ୟାଣ୍ଡସ୍କେପ ଦେଖୁଥିବା ପରି ଲାଗିଲା । କାମ ସାରି ଆମେ ବସ୍‌ରେ ଗାଇଡେଡ୍ ଟୁର୍‌ରେ ଗଲୁ । ରବିବାର ଯୋଗୁଁ ଦୋକାନ ବଜାର ବନ୍ଦ ହୋଇ ଯାଇଥାଏ । ଭଲ ଘଣ୍ଟା କିଣିବାର ମନସାଧ ପୂର୍ଣ୍ଣ ହୋଇ ପାରିଲାନି ଶ୍ରୀମତୀଙ୍କର । ସେ ଏୟାର୍‌ପୋର୍ଟଠି ନେକ୍‌ଲେସ୍ ଥାଇ ଘଣ୍ଟାଟିଏ ଓ ଗ୍ରେଟିଆ କୁକୁ ଘଣ୍ଟାଟିଏ କିଣିଲେ ଯାହା । ଜୁରିଖର ବହୁ ଜାଗାରେ ବହୁ ପ୍ରସିଦ୍ଧ ଲୋକଙ୍କ ଘର ଦେଖିଲୁ । ଗୋଟିଏ ସୁନ୍ଦର ଗଳିରେ ଲକ୍ଷାଧିପତି ଲୋକଙ୍କ ଘର କେବଳ ଥିବା ମଧ୍ୟ ଦେଖିଲୁ । ଜୁରିଖରେ କୁଆଡ଼େ ପନ୍ଦର ଶହ ଲକ୍ଷାଧିପତି ବ୍ୟକ୍ତି ବସବାସ କରନ୍ତି ।

ଜୁରିଖରୁ ବାହାରି ମିଲାନ ଫ୍ଲାଇଟ୍ ନେଇ ଆମେ ରାତି ୧ଟାରେ ରୋମ୍‌ରେ ପହଞ୍ଚିଲୁ । ରୋମ୍‌ର ହୋଟେଲ, କଙ୍କଡ଼ିଅରେ ପହଞ୍ଚୁ ପହଞ୍ଚୁ ରାତି ୨ଟା । ରୋମ୍‌ରେ ପୂରା ସୋମବାରଟି ଓ ମଙ୍ଗଳବାରର ୧୨.୩୦ ଯାଏଁ ରହିଲୁ । ଭାରତ ସହ ରୋମ୍‌ର ବହୁ ସାଦୃଶ୍ୟ ମଧ୍ୟ ଦେଖିଲୁ, ସେହିପରି ମଣିଷ, ସେହିପରି ସଙ୍କୀର୍ଣ୍ଣ ଗଳି, ସେହିପରି ଲୋକ ହାଉଳାଉ । ଭାରତ ପାଖ ହୋଇଗଲା ବୋଲି ଜଣା ପଡ଼ୁଥାଏ । ରୋମର ଅତୀତ ବୈଭବ ଦେଖି ବିଶ୍ୱାସ କରି ହେଉ ନଥାଏ ଯେ ସେହି ଲୋକମାନଙ୍କ ପୂର୍ବପୁରୁଷମାନେ ଏତେ ଶକ୍ତିଶାଳୀ ଥିଲେ, ସେହି ଲୋକମାନଙ୍କ ବିଶ୍ୱବିଜୟୀ ସେନାମାନେ ସାରା ବିଶ୍ୱକୁ ଥରହର କରି ଦେଇଥିଲେ । ରୋମର ଚର୍ଚ୍ଚ, ମାର୍ବଲ ପଥରର ମୂର୍ତ୍ତି ଦେଖି, ଅସମ୍ଭବ ବିସ୍ମୟରେ ଆମେ ଘାରି ହୋଇ ଯାଉଥିଲୁ ଯେପରି ଏବର ଓଡ଼ିଆଙ୍କୁ ଚାହିଁବା ପରେ କୋଣାର୍କ କି ପୁରୀ ମନ୍ଦିରକୁ ବାହାର ଲୋକ ଚାହିଁ ଆଶ୍ଚର୍ଯ୍ୟ ହୋଇଯାଆନ୍ତି ।

ଯେମିତି ଆମେ ଏୟାର୍ ଇଣ୍ଡିଆରେ ବସିଲୁ । ବମ୍ବେରେ ଓହ୍ଲାଇଲୁ ବଡ଼ ଘାଣ୍ଟାନ୍ତିଆକୁ । ବମ୍ବେ ଉପରେ ଉଡ଼ାଜାହାଜ ଚଢ଼ିବାଠୁ ଆମେ ଭାରତରେ ପହଞ୍ଚି ଯିବାର ଅଦ୍ଭୁତ ଶିହରଣ ଆମ ଦେହରେ ଖେଳିଗଲା । ଉଡ଼ାଜାହାଜ ତଳକୁ ଖସିବାବେଳେ ଭୟଙ୍କର ଗରମରୁ ଆମେ ଜାଣିଲୁ ଭାରତ ଆସିଗଲା ବୋଲି । ସମସ୍ତ ଭାରତର ଚିନ୍ତା, ଦୁଃଖ ଓ ଦାରିଦ୍ର୍ୟର ଉତ୍ତାପ ଯେପରି ଆକାଶ ମଣ୍ଡଳ ସ୍ପର୍ଶ କରୁଥାଏ । ସେଠି ଏୟାର୍ ପୋର୍ଟଠି ପ୍ରାୟ ଦୁଇଘଣ୍ଟା ରହିଲି । ସେତେବେଳେ ବମ୍ବେରେ ମୋର ସଙ୍ଗ ଇନ୍‌କମ୍ ଟ୍ୟାକ୍ସ ଅଫିସର୍ କୁଳମଣି ରଥ ରହୁଥାନ୍ତି । କିନ୍ତୁ ତାଙ୍କ ସହ ଯାଇ ଦେଖା କରିବା ସମ୍ଭବ ନ ଥିଲା; ଆମ ଟିକଟ କଲିକତା ଯାଏଁ; କଲିକତାରେ କଷ୍ଟମସ୍ ଚେକିଂରେ ଆମକୁ ବେଶୀ ଟଣା ଓଟରା ନ ପଡ଼ି ପାରେ ଭାବି କଲିକତା ଯାଏଁ ଟିକଟ କରିଥିଲୁ । କଲିକତାରେ ପହଞ୍ଚିଲୁ ସକାଳ ୯.୩୦ରେ । ଦମ୍‌ଦମ୍ ଏୟାର୍ ପୋର୍ଟକୁ ନନା, ବୋଉ, ଭଉଣୀ, ଭାଇଙ୍କିଏ ସହ ମୋର ଝିଅ ଆସିଥାଏ । ଝିଅ ଫୁଲମାଳ ଦେଇ ଆମକୁ ସ୍ୱାଗତ କଲା ଯଦିଓ ତା' ଆଖିରେ ଆମକୁ ଚିହ୍ନି ନ ପାରିବାର ଭାବନା ମୁଁ ଦେଖି ପାରୁଥାଏ ।

ଟ୍ୟାକ୍ସିରେ କଲିକତା ବୁଲୁ ବୁଲୁ ଲୋକମାନଙ୍କୁ ଦେଖି, କୋଠାବାଡ଼ି କାନ୍ଥକୁ ଦେଖି, ରୋଗୀ ଭିକ୍ଷୁକ ଓ ଅସଂଖ୍ୟ ଲୋକଙ୍କ ଭିଡ଼କୁ ଦେଖି, ମୋତେ ନିଶ୍ଚିତ ଭାବରେ ଲାଗିଲା ଯେ ମୁଁ ସ୍ୱର୍ଗ ଛାଡ଼ି ଏଥର ମର୍ତ୍ତ୍ୟ ନୁହେଁ, ନରକରେ ହିଁ ପହଞ୍ଚି ଯାଇଛି । ଆଉ ହଠାତ୍ ମନରେ ପ୍ରଶ୍ନ ଉଠିଲା, ମୁଁ ଭାରତ ଫେରିବାକୁ ଏତେ ବ୍ୟାକୁଳ କାହିଁକି ହେଉଥିଲି ? ଝିଅକୁ କାନାଡ଼ା ନେଇ ଯାଇଥିଲେ ଚଳି ନଥାନ୍ତା ? ହାଓଡ଼ା ଷ୍ଟେସନଠି ଅସଂଖ୍ୟ ରୋଗୀ, ଭିକାରି ଓ ମାଛିଙ୍କୁ ଦେଖି ପୁଅର ହଜାରେ ପ୍ରଶ୍ନ । ସେତେବେଳେ ତା ପ୍ରଶ୍ନର କ'ଣ ଉତ୍ତର ବା ମୁଁ ଦେଇ ଥାଆନ୍ତି ! ମୋ ନିଜ ମନରେ ତ ଅସଂଖ୍ୟ ପ୍ରଶ୍ନ ଉଠିବାରେ ଲାଗିଥାନ୍ତି—କାହିଁକି ମୋ ଦେଶର ଅବସ୍ଥା ଏପରି ହୋଇଛି ? କିଏ ଏଥିପାଇଁ ଦାୟୀ ? ଯୁଗ ଯୁଗ ଧରି ଭାରତ ବର୍ଷର ଅବସ୍ଥା ଏପରି କାହିଁକି ରହିଛି, ଅବସ୍ଥା ସୁଧୁରୁ ନାହିଁ କାହିଁକି ? ସିଦ୍ଧାର୍ଥ ତା' ପ୍ରଶ୍ନର ଉତ୍ତର ମୋତେ ମାଗୁଥିବା ବେଳେ ତା' ପାଖରେ ଭିକାରୁଣୀଟିଏ ଠିଆ ହୋଇ ତାକୁ ଭିକ ମାଗୁଥାଏ ।



# ପୃଷ୍ଠବନ୍ଧ-ରଙ୍କୀନ, ହିମାଳୟ ଓ ପିଏର

'କାନାଡ଼ା ଡାଏରୀ' ପ୍ରଚଳିତ ଦୃଷ୍ଟିକୋଣରୁ ଡାଏରୀ ନୁହେଁ, କାରଣ ବର୍ଷ, ମାସ, ଦିନ ଅନୁସାରେ ଏଥିରେ ଅନୁଭୂତି ଓ ଘଟଣାକୁ ଲିପିବଦ୍ଧ କରାଯାଇ ନାହିଁ । କାନାଡ଼ାରେ ଥିବାବେଳେ ମୁଁ ନିୟମିତ ଭାବେ ଡାଏରୀ ଲେଖୁଥିଲି—ଘଟଣାର, ଚିନ୍ତାର, ସ୍ୱପ୍ନର, ଦୁଃଖର ଆଉ ସୁଖର । କିନ୍ତୁ ସେଗୁଡ଼ିକୁ ସେହିପରି ପ୍ରକାଶ କରିବାକୁ ମୋର ଇଚ୍ଛା ହେଲନାହିଁ । ତେଣୁ ଭାରତ ଫେରିବା ପରେ ସେହି ଡାଏରୀକୁ ମୂଳ କରି ଆଉ ଥରେ ଡାଏରୀ ଲେଖିଲି, ଯାହାକୁ ଗୋଟିଏ ଦୃଷ୍ଟିକୋଣରୁ ପ୍ରତି-ଡାଏରୀ **(anti-diary)** ବୋଲି ମଧ୍ୟ କୁହାଯାଇ ପାରିବ କାରଣ ଏଥିରେ ବର୍ଷ, ମାସ, ଦିନ ପ୍ରତି ଗୁରୁତ୍ୱ ଦିଆ ନ ଯାଇ କୌଣସି ବିଶେଷ ଘଟଣା କିମ୍ବା ପ୍ରତ୍ୟୟ ଉପରେ ମହତ୍ତ୍ୱ ଦେଇ କାନାଡ଼ାରେ ରହିଥିବା ତିନିବର୍ଷ ଆଠମାସର ସେହି ସନ୍ଧାନୀସୁ ସକଳ ଅନୁଭୂତିକୁ ଏକତ୍ରିତ କରି ଲେଖା ଯାଇଛି । ଏହି ଲେଖାକୁ ଲୋକେ ରମ୍ୟ-ରଚନା କହି ପାରନ୍ତି ବା ପ୍ରତି ଡାଏରୀ ବୋଲି ମଧ୍ୟ କହିପାରନ୍ତି । ଓଡ଼ିଶାର ସଂଜ୍ଞାବାଦୀମାନେ ଏହିପରି ଲେଖା ଦେଖି ନାକ ଟେକି ପାରନ୍ତି, କିନ୍ତୁ ଫ୍ରାନ୍ସରେ ପ୍ରତି-ଉପନ୍ୟାସ **(anti-novel)**, ପ୍ରତି-ସ୍ମୃତି **(anti memoires)**, ପ୍ରଭୃତି, ଏହି ଜାତୀୟ ଲେଖା ବହୁଦିନୁ ପ୍ରଚଳିତ ହୋଇ ସାରିଲାଣି । ଏଥିରେ ସମୟାନୁକ୍ରମିକ ଚିତ୍ର ନ ଦେଇ ଗୋଟିଏ ଥିମ୍, ବା ଆଇଡ଼ିଆ ବା ବ୍ୟକ୍ତିତ୍ୱକୁ ନେଇ ଲେଖକ ନିଜର ସ୍ମୃତି ଓ ଚିନ୍ତାକୁ ଏକାଠି ଆଣେ । ଏପରି ଏକତ୍ରିକରଣ କଲାବେଳେ ଲେଖକ ଦେଶ କାଳର ବ୍ୟବଧାନ ଭୁଲିଯାଏ, ତାର୍କିକ କ୍ରମବିକାଶକୁ ମାନେ ନାହିଁ, କେବଳ କଥା ବସ୍ତୁ ଉପରେ ଆଲୋକପାତ କରିବା ପାଇଁ ଚେଷ୍ଟିତ ରହି ସେ ଘଟଣା, ସ୍ୱପ୍ନ, ଦର୍ଶନ—ସବୁର ଏକତ୍ରିକରଣ କରେ । କାନାଡ଼ାର ବିଶିଷ୍ଟ ଦାର୍ଶନିକ ମାର୍ଶାଲ ମ୍ୟାକ୍‌ଲୁହାନ୍ ଏହିପରି ସାମଗ୍ରିକ ଦୃଷ୍ଟିକୋଣକୁ ପସନ୍ଦ କରନ୍ତି ।

ମ୍ୟାକ୍‌ଲୁହାନଙ୍କ ଛଡ଼ା କାନାଡ଼ାରେ ଆଉ ଦୁଇଜଣ ବିଶିଷ୍ଟ ବୁଦ୍ଧିଜୀବୀ ମୋତେ ଆକର୍ଷଣ କରିଥିଲେ—ରାଜନୀତି ବିଜ୍ଞାନର ଅଧ୍ୟାପକ ସି. ବି. ମ୍ୟାକ୍‌ଫରସନ୍ ଓ ଭିକ୍ଟୋରିଆ କଲେଜର ଦର୍ଶନ ଅଧ୍ୟାପକ ଏଫ୍. ଇ. ସ୍ପାରସଟ୍ । ଦୁହେଁ

ମ୍ୟାକ୍‌ଲୁହନଙ୍କ ପରି ଚେଙ୍ଗା ହୋଇ ପଡ଼ଲା । ଅଧ୍ୟାପକ ଏଫ୍. ଇ. ସ୍ପାରସନ୍ ମୋ ଥେସିସ୍‌ର ପ୍ରାଥମିକ ଅବସ୍ଥାରେ ତିନିଜଣ ସୁପର୍‌ଭାଇଜର୍‌ଙ୍କ ମଧ୍ୟରୁ ଜଣେ ଥିଲେ । ତାଙ୍କର 'ଦ ଷ୍ଟ୍ରକ୍‌ଚର୍ ଅଫ୍ ଆଏସ୍‌ଥେଟିକ୍‌ସ୍' ଅତି ପ୍ରସିଦ୍ଧ ପୁସ୍ତକ । ସେ ଦର୍ଶନ ଛଡ଼ା ସାହିତ୍ୟରେ ମଧ୍ୟ ଆଗ୍ରହୀ ଓ କବିତା ଲେଖାଲେଖି କରନ୍ତି ଜାଣି ମୁଁ ଖୁସି ହୋଇଥିଲି । ବନ୍ଧୁ ଗ୍ରୁସଗ୍ରୁବୀ ତାଙ୍କ କବିତା କଥା ମୋତେ କହିଛନ୍ତି । ମୁଁ ଥରେ ଅଧେ ମଧ୍ୟ ସ୍ପାରସନ୍‌ଙ୍କ ସହ ଦେଖା କରିଛି । କିନ୍ତୁ କାହିଁକି କେଜାଣି, ସେହି ଥରେ ଅଧେରେ ସାକ୍ଷାତ୍ ପରେ, ମୋ ଥେସିସ୍‌ର ସେ ଭଲ ଗାଇଡ଼୍ ହୋଇ ପାରିବେ ବୋଲି ମୋର ମନେ ହେଲିନାହିଁ । ମୁଁ ଶରତ୍‌ର କିଛିଦିନ ପରେ ତିନିଜଣ ଅଧ୍ୟାପକଙ୍କ ପରିବର୍ତ୍ତେ (ପ୍ରଫେସର୍ ଡେଭିଡ଼୍ ସାଭେନ୍, ପ୍ରଫେସର୍ ଡେଭିଡ଼୍ ଗଟଏର ଓ ପ୍ରଫେସର ଏଫ୍. ଇ. ସ୍ପାରସନ୍) ଜଣେ ଗାଇଡ୍ ଚାହିଁଥିଲି ଓ ଡିପାର୍ଟମେଣ୍ଟ ପରେ ମୋତେ ସତକୁ ସତ ଜଣେ ଗାଇଡ୍ ଯୋଗାଇ ଦେଇଥିଲି ।

ସି. ବି. ମ୍ୟାକ୍‌ଫରସନ, ଟରେଣ୍ଟୋ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ପ୍ରଫେସର୍ ଓ ବିଭାଗୀୟ ମୁଖ୍ୟ । ସେ ତାଙ୍କ ପୁସ୍ତକ 'ଦ ପଲିଟିକାଲ୍ ଥିଓରି ଅଫ୍ ପଜେସିଭ୍ ଇନ୍‌ଡିଭିଜୁଆଲିଜମ୍' ବହିଟି ପାଇଁ ବିଖ୍ୟାତ । ତାଙ୍କର ବ୍ୟକ୍ତିତ୍ୱ ଦ୍ୱାରା ଆକୃଷ୍ଟ ହୋଇ ମୁଁ ମୋର ମାଇନର କୋର୍ସ ରୂପେ 'ମଡ଼ର୍ଣ୍ଣ ପଲିଟିକାଲ୍ ଥଟ୍' ନେଇଥିଲି । କିନ୍ତୁ ସେହି ବର୍ଷ ସେ ସେ କୋର୍ସକୁ ପଢ଼ାଇ ନଥିଲେ । ତାଙ୍କର 'ଦ ରିଅଲ୍ ଓ୍ୱାରଲ୍ଡ଼୍ ଅଫ୍ ଡେମୋକ୍ରେସି' ବୋଲି ବହିଟିଏ ମୁଁ ସାକ୍ରାମେଣ୍ଟୋ ଗଲି ବେଳେ ସାଥିରେ ନେଇଥିଲି, ବାଟରେ ଟ୍ରେନ୍ ଭିତରେ ପଢ଼ିବା ପାଇଁ ।

ସବୁ ପଢ଼ାପଢ଼ି ଭିତରେ କାନାଡ଼ା ଓ ଆମେରିକା ବୁଲି ଦେଖିବା ପାଇଁ ମୋର ସାହିତ୍ୟିକ ଅତ୍ମା ବ୍ୟାକୁଳ ହେଉଥାଏ । ଦିନେ, ୧୯୬୬ ର ୯ ଅଗଷ୍ଟ ଦିନ, ଶ୍ରୀମତୀ ଓ ସିଦ୍ଧାର୍ଥକୁ ନେଇ ମୁଁ ସତରେ ବାହାରି ପଡ଼ିଲି ଏକ ଲମ୍ବା ଯାତ୍ରାରେ— ଉତ୍ତର ଆମେରିକାର ଉତ୍ତର ପୂର୍ବ ସହର ଟରଣ୍ଟୋରୁ ଟ୍ରେନରେ ଯାତ୍ରା କରି, ସମସ୍ତ ମହାଦେଶର ମଧ୍ୟ ଭୂଭାଗ ଅତିକ୍ରମ କରି, ଉତ୍ତର ଆମେରିକାର ଦକ୍ଷିଣ ପଶ୍ଚିମ ସହର, ସାକ୍ରାମେଣ୍ଟୋ ଯିବା ଆମର ଉଦ୍ଦେଶ୍ୟ ଥିଲି । ସେଠି ମୋର ଭିଣୋଇ ଡକ୍ଟର ବଳଭଦ୍ର ମିଶ୍ର ଓ ଭଉଣୀ ନଳିନୀ ବହୁଦିନରୁ ନାଗରିକ ହୋଇ ରହିଯାଇଥିଲେ । ମୁଁ ଇଣ୍ଟର୍‌ମିଡ଼ିଏଟ୍ ପଢ଼ିବା ବେଳେ ଭିଣୋଇ ଆମେରିକା ଆସିଥିଲେ ଡକ୍ଟରେଟ୍ କରିବା ପାଇଁ । ମୁଁ ଏମ୍. ଏ. ପଢ଼ିବା ବେଳେ ଭଉଣୀ ଆମେରିକା ଆସିଥିଲେ । ସେମାନଙ୍କ ପାଖରେ କିଛି ଦିନ ରହିବା ଓ ଆମେରିକାର ସବୁଠୁ ସୁନ୍ଦର ଅଞ୍ଚଳ କାଲିଫର୍ଣ୍ଣିଆ ପ୍ରଦେଶ ବୁଲି ଦେଖିବା ଆମମାନଙ୍କର ଇଚ୍ଛା ଥିଲି । ସେଇଥିପାଇଁ କମନଓ୍ୱେଲଥ

ସ୍କଲରସିପ୍ ପାଇଁ ଚେଷ୍ଟା କଲବେଳେ ଇଂଲଣ୍ଡ ପରିବର୍ତ୍ତେ ମୁଁ କାନାଡ଼ା ପାଇଁ ଚେଷ୍ଟା କରିଥିଲି ।

ଗ୍ରାଣ୍ଡ୍ ସେଣ୍ଟ୍ରାଲଠି ନିତ୍ୟକର୍ମ ସାରି ଆମେ ଇଉନିଅନ୍ ଷ୍ଟେସନକୁ ଆସିଲୁ । ସେଇଠି ଦିନ ୩. ୩୦ରେ ପ୍ରସିଦ୍ଧ 'କାଲିଫର୍ଣ୍ଣିୟା ଜେଫିର୍' ଟ୍ରେନ୍ ଧରିଲୁ । ଖୁବ୍ ପରିଷ୍କାର ପରିଚ୍ଛନ୍ନ, ଆରାମଦାୟକ ଟ୍ରେନ୍ । ଭାରତର ଟ୍ରେନ୍‌ଗୁଡ଼ିକ ପରି ସେଥିରେ ଗହଳି ନ ଥିଲା, ଟ୍ରକ୍‌ରେ ଅଳୁ କି କୋବି ଲଦା ହେବା ପରି ଲୋକେ ଉପରେ ଲଦାଲଦି ହୋଇ ଯାଉ ନଥିଲେ । ଦୂର ଯାତ୍ରୀଙ୍କ ପାଇଁ ଶୋଇବାର ବ୍ୟବସ୍ଥା ଥିଲା । ଟ୍ରେନ୍‌କୁ ଲାଗି ଡାଇନିଂକାର୍ । ଟ୍ରେନ୍ ଛାତ ଉପରେ କାଚର ଡୋମ୍ ଥାଇ ଆଉ ଏକ ମହଲା, ଯେଉଁଠି ଲୋକ ବସି ଦୁଇ ପାଖର ଦୃଶ୍ୟାବଳୀ ଓ ମୁକ୍ତ ଆକାଶକୁ ଦେଖି ପାରିବେ । ଦୂରଗାମୀ ଟ୍ରେନ୍ ବୋଲି ବହୁ ସମୟ ବ୍ୟବଧାନରେ ଆସୁଥିବା ଷ୍ଟେସନମାନଙ୍କରେ ଯାଇ ଟ୍ରେନ୍‌ଟି ରହୁଥିଲା । ନ ହେଲେ ପ୍ରାୟ ଦିଗ୍‌ବଳୟକୁ ଲମ୍ବି ଯାଇଥିବା ପ୍ରଥମେ ପ୍ରଥମେ ଶସ୍ୟଶ୍ୟାମଳ ସମତଳ ଭୂମି, ଆଉ ତାପରେ ମରୁଭୂମି । ଶ୍ରୀମତୀ ଓ ସିଦ୍ଧାର୍ଥ ଶୋଇ ପଡ଼ିବା ପରେ, ନିଗ୍ରୋ ପୋର୍ଟରର ସହ ବିଶ୍ୱ ରାଜନୀତି ଗପ ବନ୍ଦ କରି, ମୁଁ ସେହି ଟ୍ରେନ୍ ଛାତ ଉପରକୁ ଚାଲିଯାଇ ବାହାରକୁ ଚାହିଁ ରହେ । ସେତେବେଳେ ଶୁକ୍ଳ ପକ୍ଷର ଅଦ୍ଭୁତ ଚନ୍ଦ୍ର ମରୁଭୂମିର ଆକାଶରେ ସଦ୍ୟ ଧୂସ୍ର ଗୀ ଗ୍ଲାସ ଉପରେ କୌଣସି ଶିଶୁର ହାଲିଆ ବେଲୁନ୍ ପରି ଟିକେ ଉଦାସ, ନିଷ୍ପ୍ରଭ, ବିବର୍ଣ୍ଣ । ଚନ୍ଦ୍ରକୁ ଚାହିଁ ଚାହିଁ ନିଜକୁ ପ୍ରାଗୈତିହାସିକ ଜୀବ ପରି ଲାଗେ—କେତେ ହଜାର ବର୍ଷ ତଳର କୌଣସି ଜୀବ ମୁଁ ଯେପରି, ମରୁଭୂମିର ବାଲୁକା ବିବର ଭିତରୁ ମୁହଁଟେକି ପ୍ରଥମ କରି ଚନ୍ଦ୍ରକୁ ଦେଖୁଛି ! ଚନ୍ଦ୍ରକୁ ଚାହିଁ ଚାହିଁ, ନହେଲେ ସପ୍ତର୍ଷିଙ୍କୁ ଗଣି ଗଣି ଆଖି ଲାଗି ଆସିବାବେଳକୁ, ମୁଁ ବେଳେ ବେଳେ ରେଡ଼ଇଣ୍ଡିୟାନମାନଙ୍କ ଲୁହାଟ, ସେମାନଙ୍କ ଅଶ୍ୱ ଖୁରାର ଶବ୍ଦ ଶୁଣିବାକୁ ପାଏ, କିନ୍ତୁ ନିଦ ଭାଙ୍ଗି ଯିବା ପରେ କେଉଁଠି ହେଲେ ମୁଁ ସେମାନଙ୍କୁ ଦେଖିବାକୁ ପାଏ ନାହିଁ—ବୋଧେ ମେଟ୍ରୋ ଗୋଲ୍ଡ଼ନ ମେୟରର କୌଣସି ସିନେମାର ଦୃଶ୍ୟ, ଭୁଲିଉ ଭୁଲିଉ, ମନରେ ଆବୃତ୍ତି କରି ଦେଇ ଥାଏ ମୁଁ ।

କାନାଡ଼ା ଓ ଆମେରିକାରେ ରେଡ଼ ଇଣ୍ଡିୟାନ୍‌ମାନଙ୍କର ଚିହ୍ନ ବର୍ଣ୍ଣ ମୁଁ ଦେଖି ନାହିଁ କାରଣ ସେମାନେ ସଂରକ୍ଷିତ ଜାଗାମାନଙ୍କରେ ହିଁ ରହୁଥିଲେ ଆଉ ସେହି ଜାଗାମାନଙ୍କୁ ଯିବାକୁ ଆମମାନଙ୍କୁ କେବେ ହେଲେ ଉତ୍ସାହିତ କରାଯାଉ ନ ଥିଲା । ଯେଉଁ ଦୁଃସାହସୀ ରେଡ଼୍ ଇଣ୍ଡିୟାନ୍‌ମାନେ ସେହି ସଂରକ୍ଷିତ ଜାଗା ଛାଡ଼ି ବାହାରକୁ ଚାଲି ଆସୁଥିଲେ, ଶ୍ୱେତଲୋକଙ୍କ ସଭ୍ୟତା ସେମାନଙ୍କୁ କ୍ଷଣକେ ସମ୍ପୂର୍ଣ୍ଣ ନଷ୍ଟ କରି ଦେଉଥିଲା । ବେଳେ ବେଳେ ଚୁଇଙ୍ଗମ୍‌ର ଅବଶିଷ୍ଟାଂଶ ଖଦା ମରି ଏହି ଲୋକମାନେ

ମଦ ଦୋକାନ ଆଗରେ ବମ୍ ହୋଇ ବା ରାସ୍ତାରେ ବେଶ୍ୟା ହୋଇ ବୁଲିବା ଦେଖା-ଯାଉଥିଲି । କଟକରେ ଥିବା ବେଳେ ହାଓ୍ୱାର୍ଡ ଫାଷ୍ଟଙ୍କ ଲିଖିତ ଅନେକ ଉପନ୍ୟାସ ପଢ଼ି ଏମାନଙ୍କ ପ୍ରତି ମୋର ସହାନୁଭୂତି ଆସି ଯାଇଥିଲି । କେହି ରେଡ଼୍‌ଇଣ୍ଡିୟାନ୍ ସ୍ତ୍ରୀ ପୁରୁଷ ଦେଖିଲେ ମୁଁ ସେମାନଙ୍କ ସହ ମତ ବିନିମୟ କରିବାକୁ ଇଚ୍ଛା କରୁଥିଲି । କିନ୍ତୁ ସେମାନଙ୍କ ଭିତରୁ ଜଣକୁ ବି ମୁଁ କେବେ ଦେଖି ପାରି ନ ଥିଲି ।

ଉତ୍ତର ଆମେରିକାକୁ କିନ୍ତୁ ପ୍ରଥମ ଆଗନ୍ତୁକ ଏହି ରେଡ଼୍‌ଇଣ୍ଡିୟାନ୍ ଓ ଏସ୍କିମୋମାନଙ୍କର ପୂର୍ବ ପୁରୁଷମାନେ । ଏମାନେ ଏସିଆରୁ ଆସିଥିଲେ । କାଳକ୍ରମେ ଏସିଆ ମୂଳଭୂଖଣ୍ଡର ଅଧିବାସୀଙ୍କ ସହ ଏମାନଙ୍କର ଯୋଗସୂତ୍ର ଛିନ୍ନ ହୋଇଗଲା । ଉତ୍ତର ଆମେରିକାରେ ଏମାନେ ଏକ ଶାସନାଧୀନ ହୋଇ ନ ରହି, ଶହ ଶହ ଦଳରେ ବିଭକ୍ତ ହୋଇଗଲେ । ୧୪୯୨ ଖ୍ରୀଷ୍ଟାବ୍ଦଠୁ ଇଉରୋପରୁ ଶ୍ୱେତକାୟମାନେ ଏଠାକୁ ଆସିବାକୁ ଆରମ୍ଭ କଲେ ଓ ରେଡ୍ ଇଣ୍ଡିୟାନ୍‌ଙ୍କ ଦଳୀୟ କଳହର ସେମାନେ ପୂର୍ଣ୍ଣ ସୁଯୋଗ ନେଇଥିଲେ । ଧର୍ମ ଓ ସଂସ୍କୃତିର ଜୋର୍ ଥିଲେ ଏମାନେ ହୁଏତ ଭାରତର ପରାଧୀନ ହିନ୍ଦୁମାନଙ୍କ ପରି ପୁଣି ଉଠିଥାନ୍ତେ । କିନ୍ତୁ ଏମାନଙ୍କର ସଂସ୍କୃତି ଓ ସଭ୍ୟତା ବହୁ ଦୃଷ୍ଟିରୁ ନିମ୍ନସ୍ତରର ଥିଲା । ମୁଁ ଆମେରିକା ଓ କାନାଡ଼ାରେ ବର୍ତ୍ତମାନ ସୁଦ୍ଧା ରହିଥିବା ରେଡ଼୍ ଇଣ୍ଡିୟାନ୍‌ମାନଙ୍କ ଭିତରେ ହିନ୍ଦୁ ଧର୍ମ ମାଧ୍ୟମରେ ସେମାନଙ୍କର ପୁନରୁତ୍ଥାନର ସମ୍ଭାବନା ଦେଖିଥିଲି । କିନ୍ତୁ ଭାରତରୁ ଯାଇଥିବା ସନ୍ନ୍ୟାସୀମାନଙ୍କୁ ସେମାନଙ୍କ ଭିତରେ ଧର୍ମ ପ୍ରଚାର ପାଇଁ ଅନୁମତି ମିଳେ ନାହିଁ । ଭାରତ ସରକାର କିନ୍ତୁ ଆଦିବାସୀଙ୍କ ମଧ୍ୟରେ ଖ୍ରୀଷ୍ଟିୟାନ୍ ପ୍ରଚାରକଙ୍କୁ ପ୍ରଚାର ପାଇଁ ପୂର୍ଣ୍ଣ ସୁଯୋଗ ଦିଅନ୍ତି ।

ଇଉରୋପରୁ ଆସିଥିବା ଆବିଷ୍କାରକମାନଙ୍କୁ ପ୍ରଥମେ ପ୍ରଥମେ ସରଳ ରେଡ଼୍‌ଇଣ୍ଡିୟାନମାନେ ଆମେରିକା ଓ କାନାଡ଼ା ଆବିଷ୍କାର କରିବାରେ ବହୁ ସାହାଯ୍ୟ କରିଥିଲେ । ଜାକ୍ କାରଟୀ ବୋଲି ଜଣେ ନାବିକ ଫ୍ରାନ୍ସ ଅର ଉତ୍ତର ଆମେରିକାକୁ ଆସିଥିଲେ । ସେଣ୍ଟ୍ ଲରେନ୍ସ ନଦୀ ଦେଇ ସେ ଆଜିକାଲିକାର କ୍ୟୁବେକ୍ ସହର ଯାଏଁ ଆସି ଯାଇଥିଲେ, ସେତେବେଳେ ରେଡ଼୍‌ଇଣ୍ଡିୟାନମାନଙ୍କର ‘ଷ୍ଟାଦାକୋନା’ ବୋଲି ବଡ଼ ବସତିଟିଏ ସେଠି ଥିଲା । ସେହି ରେଡ଼୍‌ଇଣ୍ଡିୟାନ୍‌ମାନେ ‘କାନାଡ଼ା’ ବୋଲି ଶବ୍ଦଟିଏ ‘ବସତି’ ଅର୍ଥରେ ବ୍ୟବହାର କରୁଥିଲେ । ସେଇଥିରୁ ଆଧୁନିକ ‘କାନାଡ଼ା’ ଶବ୍ଦ ଆସିଛି ବୋଲି କୁହାଯାଏ ।

ବାଟରେ ଆମେ ଅସଂଖ୍ୟ ଗାଈ ଦେଖିଲୁ । ସବୁ ଗାଈ ଏକା ରକମର, ନାଲି ଧଳା ମିଶା ହୃଷ୍ଟପୁଷ୍ଟ, ସମତଳ ପିଠି, ଟି.ଭି.ରେ ଦେଖିଥିବା ଏକା ପୋଷାକର

ଅସଂଖ୍ୟ ସୈନ୍ୟ ପରି । ଆମେମାନେ ପ୍ରଥମେ ରକିଜ୍ ପର୍ବତମାଳା ଦେଇ ଯାଇଥିଲୁ । ପ୍ରାୟ ତେପୋଟି ଟନେଲ୍ ଦେଇ ଟ୍ରେନ୍ ଯାଇଥିଲା । ରକିଜ୍‌ର ଦୃଶ୍ୟ ଅଦ୍ଭୁତ—ସେହି ସମୟରେ ମୋର ହିମାଳୟର ସୌନ୍ଦର୍ଯ୍ୟ ମନେ ପଡ଼ିଗଲା । ରକିଜ୍ ରୁକ୍ଷ, ଅନୁଦାର, ନିଘଞ୍ଚ, ଗଛପତ୍ରଶୂନ୍ୟ, ପ୍ରସ୍ତ ପ୍ରସ୍ତ ହୋଇ ଉପରକୁ ଉଠି ଯାଇଥିବା ଅଗଣିତ ପ୍ରସ୍ତରର ସମଷ୍ଟି । ବୌଦ୍ଧମାନଙ୍କ ଶୂନ୍ୟ ପରି କି ନ୍ୟାୟ ବୈଶେଷିକଙ୍କ ମୋକ୍ଷ ପରି ରକିଜ୍‌ର ବ୍ୟକ୍ତିତ୍ୱ ମୋତେ ଲାଗୁଥାଏ । ରକିଜ୍ ତୁଳନାରେ ହିମାଳୟର ବୃକ୍ଷଲତା, ଶ୍ୟାମଳିମା ଆଶ୍ଚର୍ଯ୍ୟପ୍ରଦ । କିନ୍ତୁ ବିଂଶ ଶତାବ୍ଦୀରେ ରକିଜ୍ ହିଁ କାଳିଦାସଙ୍କ ହିମାଳୟର ଐତିହାସିକ ସ୍ଥାନକୁ ଗ୍ରହଣ କରିଛି । ଆଜିକାଲି କିଏ ଗାଉଛି—

ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା
ହିମାଳୟୋ ନାମ ନଗାଧିରାଜଃ
ପୂର୍ବାପରୌ ତୋୟନିଧୌ ବଗାହ୍ୟ
ସ୍ଥିତଃ ପୃଥିବ୍ୟା ଇବ ମାନଦଣ୍ଡଃ ?

ଆଜିକାଲି ରକିଜ୍ ହିଁ ମାନଦଣ୍ଡ, ରକିଜ୍ ହିଁ ଦେବତାତ୍ମା । କେବଳ ପୂର୍ବାପରୌ ବଦଳରେ ଦକ୍ଷିଣ ଉତ୍ତର ଦିଗର "ତୋୟନିଧୌ ବଗାହ୍ୟ" ବୋଲି ଲେଖିବାକୁ ହେବ ଓ ଉତ୍ତର ଦିଗ ପରିବର୍ତ୍ତେ ପଶ୍ଚିମ ଦିଗରେ ପର୍ବତ ଶ୍ରେଣୀ ଅବସ୍ଥିତ ବୋଲି ଲେଖିବାକୁ ହେବ । ରକିଜ୍‌ର ଭୌଗୋଳିକ ଅବସ୍ଥିତି ଯୋଗୁ ଆମେ ପୂର୍ବରୁ ପଶ୍ଚିମକୁ ଗଲାବେଳେ ବିରାଟ ମରୁଭୂମି ଦେଇ ଯାଇଥିଲୁ । କିନ୍ତୁ ରକିଜ୍ ପରେ ପରେ ସିଏରା ପର୍ବତମାଳାଟି ମୁଁ ହିମାଳୟ ଓ ପଶ୍ଚିମଘାଟର ଶ୍ୟାମଳିମା ଫେରି ପାଇଲି । ଜାଣିଲି କାଲିଫର୍ଣ୍ଣିଆ ପାଖ ହୋଇଗଲା ବୋଲି । ୧୨ ଅଗଷ୍ଟ ଶୁକ୍ରବାର ଦିନ ୬ଟା ବେଳକୁ ଆମେ ସାକ୍ରାମେଣ୍ଟୋରେ ପହଞ୍ଚିଲୁ । ଲମ୍ବାଯାତ୍ରା ଯୋଗୁ ଶ୍ରୀମତୀ ଓ ସିଦ୍ଧାର୍ଥ କ୍ଲାନ୍ତ ଓ ପୂର୍ଣ୍ଣ ତୁଳାରେ ନିଦ୍ରାନ୍ତ, ମୁଁ କେବଳ ମ୍ୟାକ୍‌ଫରସନ୍‌ଙ୍କ ବହି ପଢ଼ି ପଢ଼ି, ନିଗ୍ରୋ ପୋର୍ଟରର ସହିତ ଭାରତ ଓ ନେହେରୁଙ୍କ ସମ୍ବନ୍ଧରେ କଥା ହୋଇ ହୋଇ ଓ ଟ୍ରେନର ଦୁଇ ପାର୍ଶ୍ୱର ଦୃଶ୍ୟକୁ ଗ୍ରହି ଗ୍ରହି ଦୃଢ଼ ରହିଥିଲି ।

ଷ୍ଟେସନକୁ ଭଉଣୀ ଭିଣୋଇ ଆସିଥିଲେ । କେତେ ବର୍ଷ ପରେ ଆମେ ସେମାନଙ୍କୁ ଦେଖିଥିଲୁ ? କିନ୍ତୁ ଭୁଲ କହିଲି, ଶ୍ରୀମତୀ ପ୍ରଥମ କରି ନଳିନୀଙ୍କୁ ଦେଖୁଥିଲେ, କାରଣ ଆମର ବିବାହ ବେଳେ ସେମାନେ ଆମେରିକାରେ ଥିବା ଯୋଗୁଁ ଆମ ବିବାହ ଉତ୍ସବରେ ଯୋଗଦେଇ ପାରି ନଥିଲେ ।

ସାକ୍ରାମେଣ୍ଟୋରେ ସେମାନଙ୍କ ପାଖେ କିଛି ଦିନ ରହିବା ପରେ ୧୬ ତାରିଖ ମଙ୍ଗଳବାର ଦିନ ଆମେ ଲସ୍ ଆଞ୍ଜେଲସ୍ ବାହାରିଲୁ । ଲସ୍ ଆଞ୍ଜେଲସ୍‌ରେ କେହି

ଚିନ୍ତା ପରିଚୟ ନ ଥାନ୍ତା । ସତ୍ କୁଳମଣି ରଥ ପରମହଂସ ଯୋଗାନନ୍ଦଙ୍କ (ଜାନୁଆରୀ ୫, ୧୮୯୩—ମାର୍ଚ୍ଚ ୭, ୧୯୫୨) ପ୍ରତିଷ୍ଠିତ ଯୋଗଦା ସତ୍‌ସଙ୍ଗ ସମାଜର ଦମ୍ପର ଜଣେ ସକ୍ରିୟ ସଭ୍ୟ । ହିମାଳୟଠୁ ଉଦ୍‌କ ଯାତ୍ରା ପ୍ରଥମେ ସ୍ୱାମୀ ବିବେକାନନ୍ଦଙ୍କଠୁ ଆରମ୍ଭ ହୋଇଥିଲା । ଆମେରିକାରେ ହିନ୍ଦୁ ଧର୍ମ ଓ ଦର୍ଶନ ପ୍ରଚାର ପାଇଁ ସ୍ୱାମୀ ଯୋଗାନନ୍ଦ ହିମାଳୟରୁ ଉଦ୍‌କ୍ ଅଭ ଜଣେ ମହତ୍ତ୍ୱପୂର୍ଣ୍ଣ ଯାତ୍ରୀ । ଲସ୍ ଆଞ୍ଜେଲସ୍‌ରେ ପରମହଂସଙ୍କ ପ୍ରତିଷ୍ଠିତ ଅନ୍ୟତମ ଅନୁଷ୍ଠାନ 'ସେଲଫ୍ ରିଆଲାଇଜେସନ୍ ଫେଲୋସିପ୍'ର ମୁଖ୍ୟ କାର୍ଯ୍ୟାଳୟ । ଏସ୍.ଆର୍.ଏଫ୍.ର ଅତିଥି ହୋଇ ରହିବାକୁ ବା ଲସ୍ ଆଞ୍ଜେଲ୍‌ସରେ ରହିବା ପାଇଁ ଅନୁଷ୍ଠାନର ସାହାଯ୍ୟ ନେବାକୁ ସେ ଆମକୁ ଚିଠି ଲେଖିଥାନ୍ତି । ଆମେ କିନ୍ତୁ ସେଠି ରହିବୁ କି ନାହିଁ କିଛି ଠିକ୍ କରି ନ ଥାଉ । ଲସ୍ ଆଞ୍ଜେଲସ୍‌ର ବସ୍ ଷ୍ଟାଣ୍ଡ୍‌ଠି ପହଞ୍ଚୁ ପହଞ୍ଚୁ ସନ୍ଧ୍ୟା । ଯେ କୌଣସି ଅପରିଚିତ ସହରରେ ସନ୍ଧ୍ୟା ମୁହୂର୍ତ୍ତ ବଡ଼ ଅସହାୟ ଭାବନା ସୃଷ୍ଟି କରିଥାଏ ନିଶ୍ଚୟ । ଆଉ କିଛି ନ ଭାବି ମୁଁ ଏସ୍.ଆର୍.ଏଫ୍. ଅଫିସ୍‌କୁ ଫୋନ୍ କଲି । ବ୍ରହ୍ମଚାରୀ ଆଲେନ୍ ଫୋନ୍ ଧରିଲେ । ସେ କୁଳମଣି ରଥଙ୍କଠୁ ସମ୍ବାଦ ପାଇ ଆମକୁ ଅପେକ୍ଷା କରୁଥିଲେ । ଅତିଥି ଭବନରେ ଜାଗା ନ ଥିବାରୁ ସେ ଆମ ପାଇଁ ଟ୍ରାଭେଲ୍ ଲଜ୍‌ର ବ୍ୟବସ୍ଥା ସଙ୍ଗେ ସଙ୍ଗେ କରିଦେଲେ । ପ୍ରଥମ ଦେଖାରେ ସେ ଏତେ ଆତ୍ମୀୟତାର ସହ କଥା ହେଲେ ଯେ ସେ ମୋର ବହୁ ଦିନୁ ପରିଚିତ ବନ୍ଧୁ ପରି ଜଣା ପଡ଼ିଲେ । ତାଙ୍କୁ କେଉଁଠି କିପରି ଆଗରୁ ଚିହ୍ନିଥିବା, ଜାଣିଥିବା ପରି ଲାଗିଲା । ମୋର ବୟସର—ବ୍ରହ୍ମଚାରୀର ସଙ୍କେତ ଚିହ୍ନର ବଳୟ ସେ ବାହୁରେ ଧାରଣ କରିଥାନ୍ତି—ଡେଙ୍ଗା, ହସ ହସ ମୁହଁ—ସେ ତିନିଦିନ ପାଇଁ ଆମର ସମସ୍ତ ଦାୟିତ୍ୱ ଯେପରି ଗ୍ରହଣ କରି ନେଇଥିଲେ । ତାଙ୍କ ସହ ଆମେ ଲସ୍ ଆଞ୍ଜେଲସ୍ ସହର ବୁଲିଥିଲୁ, ସବୁ ଦର୍ଶନୀୟ ଜାଗା ଦେଖିଥିଲୁ । ହିନ୍ଦୁ ଧର୍ମ ଓ ଦର୍ଶନରେ ତାଙ୍କର ଗଭୀର ବିଶ୍ୱାସ, ପରମହଂସ ଯୋଗାନନ୍ଦଙ୍କଠି ଅଟଳ ଭକ୍ତି ଦେଖି ଗତ ଜନ୍ମରେ ସେ ନିଶ୍ଚିତ ଭାବେ ହିନ୍ଦୁ ଓ ଭାରତବାସୀ ଥିଲେ ବୋଲି ଦିନେ ମୁଁ ତାଙ୍କୁ କହିଲି । ସେ ହସିଲେ ଓ ସେହି ଦୃଷ୍ଟିରୁ ମୁଁ ଆମେରିକାର ଲୋକ ଥିଲି ବୋଲି ସେ ପ୍ରତ୍ୟୁତ୍ତର ଦେଲେ । କେବଳ ବ୍ରହ୍ମଚାରୀ ଆଲେନ୍ ନୁହଁ, ଆଶ୍ରମର ମୁଁ ଯେତେ ସାଧକ, ସାଧିକାଙ୍କୁ ଦେଖିଲି ସମସ୍ତେ ମତେ ଭାରତୀୟ ଲୋକ ପରି ଜଣା ପଡ଼ିଲେ । ବ୍ରହ୍ମଚାରୀ ଲଗି ବୋଲି ଅନ୍ୟ ଜଣେ ବ୍ରହ୍ମଚାରୀ ଆମମାନଙ୍କୁ ଆଶ୍ରମ ହେଡ଼କ୍ୱାର୍ଟରସ୍ ମାଉଣ୍ଟ ୱାସିଂଗ-ଟନ୍‌ଠାକୁ ନେଇଥିଲେ । ସେତେବେଳେ ସେଠି ଏସ୍.ଆର୍.ଏଫ୍.ର ନୂଆ ପୂଜାମନ୍ଦିର ତିଆରି ଚାଲିଥାଏ । ସ୍ୱାମୀଜୀଙ୍କ ଲାଇବ୍ରେରୀ, ବସିବା ଜାଗା, ବିଶ୍ରାମ କରିବା ଜାଗା, ଚିତ୍ର, ଆମେ ଆଗ୍ରହ ଓ ଶ୍ରଦ୍ଧାର ସହ ଦେଖିଲୁ । ବଡ଼ ବିଶ୍ୱାସ ଓ ଶ୍ରଦ୍ଧା ସହ ସେମାନେ ସ୍ୱାମୀଜୀଙ୍କ ସ୍ମୃତିକୁ ରକ୍ଷା କରିଆନ୍ତି । ଏସ୍.ଆର୍.ଏଫ୍.ର ତୃତୀୟ ସଭାପତି

(ପରମହଂସ ଯୋଗାନନ୍ଦ ପ୍ରଥମ, ଦ୍ୱିତୀୟ ସନ୍ଥପତ ରାଜର୍ଷି ଜନକାନନ୍ଦ) ଦୟାମାତାଙ୍କ ଅନୁପସ୍ଥିତିରେ ଆଶ୍ରମର ପରିଚାଳନା ଦାୟିତ୍ୱ ପଡ଼ିଥାଏ ଉମାମାତାଙ୍କ ଉପରେ— ମଧ୍ୟବୟସ୍କା, ସୁନ୍ଦରୀ, ମାତୃସୁଲଭ ଚେହେରା, କଳା **କଳା** ଡୋଳା, କରୁଣାର ପ୍ରତିମୂର୍ତ୍ତି—ଉମାମାତାଙ୍କୁ ଦେଖି ଦେଖି ମୋର ମୋ ବୋଉ କଥା ମନେ ପଡ଼ିଗଲା । ସେ ଫୋନ୍‌ରେ ଆମମାନଙ୍କ କଥା ଦୟାମାତାଙ୍କୁ ଜଣାଇ ଆମ୍ଭମାନଙ୍କ ପାଇଁ ଆଶୀର୍ବାଦ ସଂଗ୍ରହ କରି ସାରିଛନ୍ତି ବୋଲି ଆମକୁ ହସି ହସି କହୁଥିଲେ । କାର୍‌ରେ ବସିବା-ବେଳେ ଜଣେ ଲୋକ ବୋଟେ ପିଚ ଫଳ ପଛ ଆଡ଼େ ରଖି ଦେଇଗଲା—ବାଟରେ ଶୋଷ କି ଭୋକ କଲେ ଆମେ ଖାଇବୁ ବୋଲି ଉମାମାତା ପଠାଇଥିଲେ । ପୁଣି ମୋର ବୋଉ ମନେ ପଡ଼ିଲା, ଆଖିରେ ପାଣି ଜକେଇ ଆସିଲା ।

ବ୍ରହ୍ମଚାରୀ ଆଲେନ୍‌ଙ୍କ ସହ ଆମେ ମେକ୍‌ସିକୋ ପାଖାପାଖି ଏନ୍‌ସିନଆଟସ ଆସିଥିଲୁ । ସେଠି ଏସ୍. ଆର୍. ଏଫ୍.ର ରିଟ୍ରିଟ୍‌ଟିଏ ରହିଛି, ପ୍ରଶାନ୍ତ ମହାସାଗରର ଠିକ୍ କୂଳରେ । ସମୁଦ୍ର କୂଳରେ ଠିଆ ହୋଇ ମୁଁ ପରମହଂସ ଯୋଗାନନ୍ଦଙ୍କ କଥା ଭାବୁ ଭାବୁ ପୁରା କଥା ଭାବିଥିଲି, ଯୋଗାନନ୍ଦଙ୍କ ଗୁରୁ ପରମହଂସ ଯୁକ୍ତେଶ୍ୱରଜୀଙ୍କ କଥା ଭାବିଥିଲି ଯେ ୧୯୨୦ରେ କ୍ରିୟାଯୋଗର ପ୍ରଚାର ଓ ପ୍ରସାର ପାଇଁ ଯୋଗାନନ୍ଦଙ୍କୁ ଆମେରିକା ପଠାଇଥିଲେ । ପ୍ରଶାନ୍ତ ମହାସାଗରର ପାଣି ଛୁଇଁ ସେହି ପାଣି ପୂରା ବେଳାଭୂମି ସ୍ପର୍ଶ କରୁଥିବ ଭାବି ଖୁସି ହୋଇ ମୋର ରୋମାଞ୍ଚ ହୋଇଗଲା ।

ଏନ୍‌ସିନଆଟସ୍ ଆଶ୍ରମଠ ମୁଁ ଆଶ୍ରମର କେତୋଟି ବହି ଭିତରେ ପରମହଂସ ଯୋଗାନନ୍ଦଙ୍କ ଆତ୍ମଜୀବନୀ ବହିଟି କିଣିଥିଲି । ବହିଟି ମୁଁ ବ୍ରହ୍ମଚାରୀ ଆଲେନ୍‌ଙ୍କ ହାତରେ ଦୟାମାତାଙ୍କ ପାଖକୁ ତାଙ୍କର ହସ୍ତାକ୍ଷର ଓ ଆଶୀର୍ବାଦ ଭିକ୍ଷା କରି ପଠାଇ ଦେଇଥିଲି । ସେତେବେଳେ ଦୟାମାତା ସାଧନା ପାଇଁ ମରୁଭୂମିର କୌଣସି ରିଟ୍ରିଟ୍‌ରେ ଥିଲେ । ବହିଟି ସେପ୍‌ଟେମ୍ବର ପହିଲାକୁ ଟରଣ୍ଟୋ ପହଞ୍ଚି ଯାଇଥିଲା ।

ଆମେ ଜୁଲାଇ ୨୦ ତାରିଖ ବେଳକୁ ସାକ୍ରାମେଣ୍ଟୋ ଫେରି ଆସିଥିଲୁ । ସେଠୁ ୨୩ ତାରିଖ ଦିନ ଟ୍ରେନ୍ ଧରି କାନାଡ଼ା ଫେରିଲୁ । ଏଥର ଟ୍ରେନ୍ ମରୁଭୂମି ଭିତରେ ଦିନବେଳା ଯାଇଥିଲା । ତେଣୁ ରାତିର ଚନ୍ଦ୍ର ସହିତ ମରୁଭୂମିର ମ୍ୟାଜିକ୍ ମଧ୍ୟ ଆମ ପାଇଁ ଆଉ ନ ଥିଲା । ଟରଣ୍ଟୋ ଫେରିବାକୁ ଆମେ ତରତର ମଧ୍ୟ ହେଉଥିଲୁ ।

କାନାଡ଼ା ପୁଣି କେବେ ମୁଁ ଫେରିବି ଜାଣିନି । ଦର୍ଶନ ଶପର୍ଶ ନେଇ ବ୍ୟସ୍ତ ରହିଥିବା ବେଳେ ମୁଁ ମୋର କାନାଡ଼ା ନେଇ ସାହିତ୍ୟିକ ଆକାଂକ୍ଷାକୁ ଯଥାର୍ଥ ଭାବେ ପୂର୍ଣ୍ଣ କରି ପାରିନାହିଁ । ପୁଣି କେବେ ସୁଯୋଗ ମିଳିଲେ ଜଣେ ସାହିତ୍ୟିକ ଭାବେ କାନାଡ଼ା ଯାଇ କାନାଡ଼ା ପୃଷ୍ଠଭୂମି ଉପରେ ଉପନ୍ୟାସଟିଏ ଲେଖିବାକୁ ଇଚ୍ଛା ଅଛି । କିନ୍ତୁ ମୁଁ ପୁଣି କାନାଡ଼ା ଯିବା ବେଳକୁ କାନାଡ଼ାର କ'ଣ କ'ଣ ପରିବର୍ତ୍ତନ ହୋଇଥିବ କେଜାଣି ! ସତ୍ୟ ତ୍ରେତାଯୁଗର କୌଣସି ଲୋକ ଭାରତ ଆସିଲେ ଭାରତରେ କିଛି ଅଡୁଆ ପାଇବେନି, ଭାରତବର୍ଷର କୌଣସି ଅଂଶ ତାଙ୍କୁ ଅପରିଚିତ ଜଣା ପଡ଼ିବ ନାହିଁ । କିନ୍ତୁ ବୈଜ୍ଞାନିକ ଆବିଷ୍କାର ଓ ଟେକ୍‌ନୋଲଜିର ନୂତନ ଉଦ୍ଭାବନ ଓ ପ୍ରୟୋଗ

ଯୋଗୁ ଉତ୍ତର ଆମେରିକାର ରୂପ ଏତେ ଦ୍ରୁତ ଗତିରେ ବଦଳି ଚାଲିଛି ଯେ ମୁଁ ପୁନ କାନାଡ଼ା ଗଲେ ମୋର ପୂର୍ବ କାନାଡ଼ା ସେଠି ଥିବ କି ନାହିଁ ସନ୍ଦେହ । ଟେକ୍‌ନୋଲଜି ସହିତ ମଣିଷର ପ୍ରକୃତିରେ ମଧ୍ୟ ପରିବର୍ତ୍ତନ ଆସେ ବୋଲି ମ୍ୟାକ୍‌ଲୁହନ୍ କହନ୍ତି । ତେଣୁ କାନାଡ଼ାର ବାହାର ରୂପ କେବଳ ନୁହେଁ କାନାଡ଼ାର ଲୋକଙ୍କ ସ୍ୱଭାବରେ, ସେମାନଙ୍କ ସାହିତ୍ୟ ଓ ସଂସ୍କୃତିରେ ମଧ୍ୟ ବିରାଟ ପରିବର୍ତ୍ତନ ସଂଘଟିତ ହୋଇସାରିଥିବ ।

ମୁଁ ଭାରତ ଫେରିବା ବର୍ଷ, ୧୯୬୭ରେ, କାନାଡ଼ା ତା'ର ଶତବାର୍ଷିକୀ ଉତ୍ସବ ପାଳିଥିଲା । ସେହି ଉପଲକ୍ଷରେ ୨୦୬୭ରେ କାନାଡ଼ାର ରୂପ ନେଇ କାନାଡ଼ାର ବୁଦ୍ଧିଜୀବୀ ଓ ଭବିଷ୍ୟବକ୍ତାମାନେ ବହୁ କଳ୍ପନା ଜଳ୍ପନା କରିଥିଲେ । ଯଦି ଯୁଦ୍ଧରେ ଲୋକ କ୍ଷୟ ନ ଘଟେ, ବା ପରିବାର ନିୟନ୍ତ୍ରଣ ଯୋଗୁ ଲୋକସଂଖ୍ୟା ହ୍ରାସ ନ ପାଏ ବା ପୃଥିବୀର ଅପେକ୍ଷାକୃତ ଅନୁନ୍ନତ ଅଞ୍ଚଳରୁ ଲୋକେ ୨୦୬୭ ସୁଦ୍ଧା ଚାଲି ଯାଇ ନ ଆନ୍ତି, ତେବେ କେବଳ ଟରଣ୍ଟୋରେ ଲୋକସଂଖ୍ୟା ସେତେବେଳକୁ ୨୫ କୋଟି ହୋଇ ଯାଇଥିବ । କିନ୍ତୁ ସେତେବେଳକୁ ସାରା ଉତ୍ତର ଆମେରିକା ଗୋଟିଏ ସରକାର ଦ୍ୱାରା ଶାସିତ ହେଉଥିବ । ସାରା ମହାଦେଶଟି ବହୁ ନଗର ରାଷ୍ଟ୍ର ବା ସିଟି-ଷ୍ଟେଟ (ମେଗାଲୋପଲିସ୍)ରେ ପରିଣତ ହୋଇଥିବ । ଟରଣ୍ଟୋ ନଗର-ରାଷ୍ଟ୍ର ଦଶଟି ଜିଲାରେ ବିଭକ୍ତ ହୋଇଥିବ । ପ୍ରାଦେଶିକ ସରକାର ବିଭିନ୍ନ ନଗର ରାଷ୍ଟ୍ରଗୁଡ଼ିକ ମଧ୍ୟରେ ସମନ୍ୱୟକାରୀର କାର୍ଯ୍ୟ କରୁଥିବେ । ନଗର-ରାଷ୍ଟ୍ରରେ ଜଣେ ମହାପାଳକ ବା ସୁପର୍‌ମେୟର ରହିଥିବେ । ଦେଶର କେନ୍ଦ୍ର ସରକାରଙ୍କ ଅଧୀନରେ ବୈଦେଶିକ ବ୍ୟାପାର, ପ୍ରତିରକ୍ଷା ବିଭାଗ, ଡାକ ତାର ବିଭାଗ ଛଡ଼ା ଗ୍ରହାନ୍ତରଯାତ୍ରା ବିଭାଗର ଦାୟିତ୍ୱ ମଧ୍ୟ ଥିବ । ଆଜିକାଲିକାର ବହୁ କାର୍ଯ୍ୟ ସେତେବେଳେ ଦରକାର ପଡ଼ି ନ ଥିବା ହେତୁ ସେତେବେଳେ ସେହି ସମ୍ପର୍କୀୟ ଚାକିରିଗୁଡ଼ିକ ମଧ୍ୟ ନ ଥିବ । ଫାଇଲ ରଖିବା କାର୍ଯ୍ୟ କମ୍ପ୍ୟୁଟର କରୁଥିବ, ଲେସର୍ ଇମ୍ପଲସ୍‌ରେ ଚିଠି ଡାକ କାର୍ଯ୍ୟ ଓ ଟାଇପିଂ କାର୍ଯ୍ୟ କରାଯାଇ ପାରୁଥିବ, ଟେଲିଭିଜନ ମାଧ୍ୟମରେ ସମ୍ମିଳନୀ ଅନୁଷ୍ଠିତ ହୋଇ ପାରୁଥିବ । ତେଣୁ ସେତେବେଳେ ସେକ୍ରେଟେରୀ କ୍ଲର୍କ ବା ଟାଇପିଷ୍ଟ୍ ହୋଇ କେହି ନ ଥିବେ । ବିଶ୍ରାମର ପ୍ରାଚୁର୍ଯ୍ୟ ଯୋଗୁ ଅଧିକାଂଶ ଲୋକ ଘର ଜୀବନ ଗ୍ରହଣ ହୋଇ ରହିବାକୁ ପସନ୍ଦ କରୁଥିବେ । ନାରୀମାନେ ଗୃହିଣୀ ହୋଇ ରହୁଥିବେ । କେବଳ ଶତକଡ଼ା ଦଶଭାଗ ଲୋକ ଜୀବିକାରେ ପୂରା ନିୟୋଜିତ ହେବେ । ଦୁଇକୋଟି ଲୋକ ରାଜ୍ୟର ସମ୍ଭ୍ରାନ୍ତ ଶକ୍ତିଶାଳୀ ଶ୍ରେଣୀର (ସର୍ବୋଚ୍ଚ ପରିଚାଳକ, ରାଜନୈତିକ ନେତା, ଲେଖକ ଓ ବୈଜ୍ଞାନିକ) ଅନ୍ତର୍ଭୁକ୍ତ ହୋଇଥିବେ । ନଗର-ରାଷ୍ଟ୍ର ଶତକଡ଼ା ତିରିଶଭାଗ ଲୋକଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିବ । ପୋଲିସମାନେ ଲୋକଙ୍କ ଅପରାଧ-ପ୍ରବୃତ୍ତି ଜାଣି ଅପରାଧ ନିରାକରଣ ପାଇଁ ସେମାନଙ୍କୁ ଚିକିତ୍ସାଳୟକୁ ନେଉଥିବେ ଓ ଏହିପରି ଭାବେ ସେମାନେ ପୋଲିସ ଓ ମନସ୍ତାତ୍ତ୍ୱିକ ଚିକିତ୍ସକ ଉଭୟର କାର୍ଯ୍ୟ

କରୁଥିବେ । ଲାଇବ୍ରେରୀରୁ ଟେଲିଭିଜନ୍ ମାଧ୍ୟମରେ ଲୋକେ ବିଭିନ୍ନ ବହିର ବିଷୟବସ୍ତୁ ଜାଣି ପାରୁଥିବେ । ଆଜିକାଲିକା ପରି ସେତେବେଳେ ଟଙ୍କା ପଇସା ରହିବ ନାହିଁ କି ବ୍ୟାଙ୍କ ରହିବ ନାହିଁ । ସାର୍ବିକ-କ୍ରେଡ଼ିଟସିଷ୍ଟେମ୍ ସେତେବେଳେ ପ୍ରଚଳିତ ହୋଇଥିବ । କମ୍ପ୍ୟୁଟର୍‌ମାନେ ବିଭିନ୍ନ ବ୍ୟକ୍ତିଙ୍କ ଏକାଉଣ୍ଟ ରଖୁଥିବେ । ସହରରେ ବ୍ୟବହୃତ ଜଳ ଭୂ ପୃଷ୍ଠ ଉପରେ ନ ରହି ଭୂ ଗର୍ଭରେ ସଂରକ୍ଷିତ ହେଉଥିବ । ବ୍ୟବହୃତ ଜଳ ସଂଶୋଧିତ ହୋଇ ପୁଣି ପାନୀୟ ଜଳରେ ପରିଣତ ହେବାର ବ୍ୟବସ୍ଥା ମଧ୍ୟ ରହିଥିବ । ଆଜିକାଲିକାର ସ୍କୁଲ ସେତେବେଳେ ନ ଥିବ । ପିଲାମାନେ ଶୋଇଥିବା ଅବସ୍ଥାରେ ଘରେ ଘରେ ପ୍ରଥମେ ଅକ୍ଷର ପଢ଼ା ଶିଖିଯିବେ ଓ ଟିକିଏ ବଡ଼ ହୋଇଗଲେ ଟି.ଭି. ମାଧ୍ୟମରେ ସେମାନଙ୍କୁ ପଢ଼ା ବହିର ବିଷୟ ଶିଖାଇ ଦିଆଯିବ । ଗଣିତ ଉପରେ ଅଧିକ ଜୋର୍ ଦିଆ ଯିବ ନାହିଁ, କାରଣ ସାଧାରଣ ଲୋକେ କମ୍ପ୍ୟୁଟର୍ ବ୍ୟବହାର କରି ଫେଡ଼ିବା, ମିଶାଇବା, ହରିବା, ଗୁଣିବା, ପ୍ରଭୃତି, କାର୍ଯ୍ୟ କରୁଥିବେ । କାନ୍ତ ଦେଶରେ ବିଶ୍ୱବିଦ୍ୟାଳୟଗୁଡ଼ିକର ସଂଖ୍ୟା ବଢ଼ିଯିବ, ପିଲାମାନେ ବାର ବର୍ଷ ବୟସ ବେଳକୁ ବିଶ୍ୱବିଦ୍ୟାଳୟରେ ଭର୍ତ୍ତି ହୋଇଯିବାକୁ ଉପଯୁକ୍ତ ହୋଇଯିବେ । ଗୃହିଣୀମାନେ ଘରେ ବସି ଭିଡ଼ିଓଫୋନ୍‌ରେ ଦୋକାନର ଜିନିଷ ଦେଖି ପାରିବେ ଓ ଅର୍ଡ଼ର୍ ଦେଇ ପାରିବେ । ପାଇପ୍ ଲାଇନ୍‌ରେ ସେମାନେ ମଗାଇଥିବା ଜିନିଷ ସେମାନଙ୍କର ନିବାସ ସ୍ଥଳୀକୁ ଆସି ପାରୁଥିବ । ଜଳବାୟୁ ଉପରେ ନିୟନ୍ତ୍ରଣ କରି ଟରଣ୍ଟୋର ହ୍ରଦଗୁଡ଼ିକ ଚତୁଃପାର୍ଶ୍ୱରେ ନଡ଼ିଆ ଓ ତାଳଗଛ ଲଗା ଯାଇଥିବ । ଲୋକେ ପୃଥିବୀ ବୁଲିବାକୁ ଆଉ ବେଶୀ ପସନ୍ଦ କରୁ ନ ଥିବେ କାରଣ ଟି.ଭି. ଦ୍ୱାରା ଘରେ ବସି ସେମାନେ ସମସ୍ତ ପୃଥିବୀକୁ ପାଇ ପାରୁଥିବେ । ଲୋକେ ମାଇଲ ମାଇଲ ଉଚ୍ଚା ଆପାର୍ଟମେଣ୍ଟ ବିଲ୍ଡିଂ-ମାନଙ୍କରେ ରହୁଥିବେ । ସେମାନଙ୍କ ମନୋରଞ୍ଜନ ପାଇଁ ୧୯୬୭ରେ କାନାଡ଼ାରେ ଯାହା ଘଟୁଥିଲା ତାହା ବହୁ ନାଟକର ବିଷୟବସ୍ତୁ ହେବ ଓ ରୋବଟ୍‌ମାନେ ତାହା ଅଭିନୀତ କରି ଲୋକଙ୍କୁ ଆନନ୍ଦ ଦେଉଥିବେ । ରକେଟ୍ ଉଡ଼ାଜାହାଜର ସ୍ଥାନ ନେଇ ପାରିଥିବ । ତେଣୁ ଲୋକେ ଟରଣ୍ଟୋରେ ବ୍ରେକ୍‌ଫାଷ୍ଟ ଖାଇ ଅଷ୍ଟ୍ରେଲିଆରେ ଲଞ୍ଚ ଖାଇ ପାରୁଥିବେ । ମଟର ରହିବ ନାହିଁ । ବ୍ୟକ୍ତିଗତ ବ୍ୟବହାର ପାଇଁ ଲୋକେ ହୋଭରକ୍ରାଫ୍‌ଟ ବ୍ୟବହାର କରିବେ ।

୧୯୬୭ର ଶତବାର୍ଷିକୀ ଉତ୍ସବରେ କାନାଡ଼ାର ଭବିଷ୍ୟତ ନେଇ ଏହି ସବୁ କଳ୍ପନା ଜଳ୍ପନା ଚାଲିଥିବାବେଳେ ମୁଁ ଭାରତ କଥା ଭାବୁଥିଲି ଓ ଭବିଷ୍ୟତର ଏହି ପରିବର୍ତ୍ତିତ ପୃଥିବୀ ସହି ଭାରତ କପରି ସମନ୍ୱୟ ରକ୍ଷି ଚଳୁଥିବ, ତାହା ଭାବୁଥିଲି । କାରଣ ରାଜନୈତିକ ନେତା ଓ ପ୍ରଶାସନିକ କର୍ମଚାରୀ ଓ ସେମାନଙ୍କ ଅମଲାତନ୍ତ୍ର ଯୋଗୁ ଭାରତର କେବେହେଲେ ଅଗ୍ରଗତି ହୋଇ ପାରି ନ ଥିବ ବୋଲି ମୁଁ ଜାଣିଛି । ବରଂ ସଭ୍ୟ ଦେଶଗୁଡ଼ିକ ଓ ଭାରତ ମଧ୍ୟରେ ବ୍ୟବଧାନ ବଢ଼ି ବଢ଼ି ୨୦୬୭ ବେଳକୁ ତାହା କି ରୂପ ଗ୍ରହଣ କରିଥିବ ବର୍ତ୍ତମାନ ତାହା ଭାବିଲେ ତରରେ ଦେହରେ ରୋମାଞ୍ଚ ହୋଇ ଯାଉଛି ।

# ଲେଖକଙ୍କ ପରିଚୟ

କୃଷ୍ଣ ପ୍ରସାଦ ମିଶ୍ରଙ୍କ ଜନ୍ମ ୧୯୩୩ ଏପ୍ରିଲ ମାସରେ, ବ୍ରହ୍ମପୁର ସହରରେ । କଟକର ରେଭେନ୍ସା କଲିଜିଏଟ୍ ସ୍କୁଲ, ରେଭେନ୍ସା କଲେଜ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ସେଣ୍ଟ୍ରାଲ ହିନ୍ଦୁ କଲେଜ ଓ ଲ' କଲେଜରେ ଅଧ୍ୟୟନ । ସର୍ବ ଭାରତୀୟ ଆଲାଇଡ୍ ସର୍ଭିସେସ୍‌ରେ ମନୋନୀତ ହୋଇ ସେଣ୍ଟ୍ରାଲ୍ ସେକ୍ରେଟେରିଏଟ୍‌ରେ ପ୍ରୋବେସନାରୀ ଅଫିସର୍ ରୂପେ କାର୍ଯ୍ୟ କରୁଥିବା ବେଳେ ଇସ୍ତଫା ପ୍ରଦାନ । ଓଡ଼ିଶା ହାଇକୋର୍ଟରେ ଅଳ୍ପଦିନ କାର୍ଯ୍ୟ କରିବା ପରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ଯୋଗଦାନ । ବି. ଜେ. ବି. କଲେଜ ଓ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧ୍ୟାପକ । କମନୱେଲ୍‌ଥ ସ୍କଲର ରୂପେ ୧୯୬୩ରେ ମନୋନୀତ ଓ ୧୯୬୭ରେ କାନାଡ଼ାର ବିଖ୍ୟାତ ଟରେଣ୍ଟୋ ବିଶ୍ୱବିଦ୍ୟାଳୟରୁ ମେଟାଏଥିକସ୍ ଉପରେ ଗବେଷଣା କରି ପି. ଏଚ୍. ଡି. ଡିଗ୍ରୀ ଲାଭ । ୧୯୬୮ରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗରେ ପ୍ରାଧ୍ୟାପକ । ୧୯୮୪ରେ ପ୍ରଫେସର୍ ଭାବେ ନିଯୁକ୍ତ । ୧୯୮୭ରେ ସେ ଫୁଲବ୍ରାଇଟ ସ୍କଲର ରୂପେ ଆମେରିକାର ଆଲବୁକରକେର ନିଉମେକସିକୋ ବିଶ୍ୱବିଦ୍ୟାଳୟରେ ୩ ମାସ ପାଇଁ ଭିଜିଟିଂ ରିସର୍ଚ୍ଚ ପ୍ରଫେସର୍ ରୂପେ ଯୋଗ ଦେଇଥିଲେ । ବର୍ତ୍ତମାନ ସୁଦ୍ଧା ତିନୋଟି ଉପନ୍ୟାସ, ଦଶଟି କ୍ଷୁଦ୍ର ଗଳ୍ପ ଓ ଦୁଇଟି ପ୍ରବନ୍ଧ ପୁସ୍ତକ ଓ ଦୁଇଟି ଜୀବନୀର ଲେଖକ । ଓଡ଼ିଶା ଓ ଓଡ଼ିଶା ବାହାରେ ବିଭିନ୍ନ ପତ୍ର ପତ୍ରିକାରେ ତାଙ୍କର ଲେଖା ପ୍ରକାଶିତ ଓ ଆଦୃତ । ୧୯୭୨ ବିଷୁବ ମିଳନ ଉତ୍ସବରେ ଶ୍ରେଷ୍ଠ ଗାଳ୍ପିକ ରୂପେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ଏକ ସହସ୍ର ଟଙ୍କା ପୁରସ୍କୃତ ହୋଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୩ରେ ପ୍ରକାଶିତ ତାଙ୍କର ଗଳ୍ପ ପୁସ୍ତକ 'ଚନ୍ଦିତ ବିଦର' ପାଇଁ ୧୯୮୫ର ଆୱାର୍ଡ ତାଙ୍କୁ ପ୍ରଦାନ କରିଛନ୍ତି । ଇଂରାଜୀରେ ଦର୍ଶନ ପ୍ରବନ୍ଧ ଲେଖି ମଧ୍ୟ ବିଖ୍ୟାତ । ବାଣୀବିହାର କ୍ୟାମ୍ପସ୍‌ରେ ପତ୍ନୀ ଓ ପିଲାମାନଙ୍କୁ ନେଇ ରୁହନ୍ତି ।

—ପ୍ରକାଶକ